# ଦେହ-ମନ-ବୁଦ୍ଧି



ରାଜକିଶୋର ପଟ୍ଟନାୟକ

# ଦେହ-ମନ-ବୁଦ୍ଧି

ରାଜକିଶୋର ପଟନାୟକ

ପ୍ରକାଶକ :

ରାଷ୍ଟ୍ରଭାଷା ପୁସ୍ତକ ଭଣ୍ଡାର

ବାଙ୍କାବଜାର କଟକ-୨

ଦେହ-ମନ-ବୁଦ୍ଧି

ଉପନ୍ୟାସ

ଲେଖକ :

ରାଜକିଶୋର ପଟ୍ଟନାୟକ

ପ୍ରକାଶ : ୯-୧୦-୧୯୮୫

ମୁଦ୍ରଣ :

ମଜଦୁର ପ୍ରିଣ୍ଟର୍ସ

ଚାନ୍ଦନୀଚୌକ, କଟକ-୨

ଛପା—ଏଗାର ଶହ

ମୂଲ୍ୟ—ଅବନ୍ଧା—ଦଶ ଟଙ୍କା

ବନ୍ଧାଇ—ତେର ଟଙ୍କା

**DEHA-MANA-BUDHI**

An Oriya fiction

on Body, Hind and Intellect

(Damy 1/8 96 P. + 4 P.

*Written by* :

**Rajkishore Patnaik**

Cuttack-9

*Published* ; 9-10-1985

*Published by* :

**Rastrabhasa Pustak Bhandar**

Banka Bazar, Cuttack-2

*Printed at* :

**Mazdoor Printers**

Chandnichouk, Cuttack

*Print* : Eleven hund.

*Price* : Umbound—Rupees Ten

&

Bound Rupees—Thirteen

କଟକ

ତା ୯-୧୦-୮୫

ଯେଉଁ ମହିଳାମାନେ ଯୌବନ, ସୌନ୍ଦର୍ଯ୍ୟ, ବିଦ୍ୟା ଓ ଯୋଗ୍ୟତାକୁ ଧରି ନିଜ ଜୀବନରେ ଷୋଳ ବର୍ଷରୁ ବତିଶି ବର୍ଷ ଅଟକି ଯାଇ ପୁଣି ନିଜର ଅଗାଧ ଆତ୍ମବିଶ୍ୱାସରେ ଘର ଓ ବର ବାଛିପାରୁଛନ୍ତି କେବଳ ସେହି ଦେବୀମାନଙ୍କ ପାଇଁ ଏହି ବହିଟି ଲେଖାଯାଇଛି । ସେମାନେ ଏହାକୁ ବୁଝିପାରିବେ ।

ଦେହ-ମନ-ବୁଦ୍ଧି ଉପନ୍ୟାସର ୧୯୯୫ ପର୍ଯ୍ୟନ୍ତ ସମସ୍ତ ସମ୍ଭାବ୍ୟ ମୁଦ୍ରଣର ରୟାଲିଟି ପ୍ରକାଶକଙ୍କଠାରୁ ଅଗ୍ରୀମ ଓ ଏକକାଳୀନ ନେଇ ତାଙ୍କୁ ସମସ୍ତ ସତ୍ତ୍ୱ ୧୯୯୫ ଯାଏ ବିକି ଦେଇଛି । ଏହି ସୌଜନ୍ୟ ପାଇଁ ମୁଁ ଅନୁଗୃହୀତ । ଇତି ।

ରାଜକିଶୋର ପଟନାୟକ
ଅଶୋକ ଭିଲ୍ଲା
ମଝିତେଲିଙ୍ଗାବଜାର
କଟକ-୭୫୩୦୦୯

# ଦେହ-ମନ-ବୁଦ୍ଧି

କଟକ ସହରର ଲାଲବାଗ ଥାନା ଅଞ୍ଚଳରେ ଜଣେ ପୀର ଥିଲେ—ମନସୁର ବାବା । ତାଙ୍କୁ ଅନେକ ଲୋକ ଜାଣୁଥିଲେ ଓ ଭକ୍ତି କରୁଥିଲେ । କିନ୍ତୁ ସେଇବାଟେ ଚଳପ୍ରଚଳ ହେଉଥିଲେ ମଧ୍ୟ ତାଙ୍କୁ ଜାଣିବାକୁ ଲାଗିଗଲା ଚଉରାଳିଶି ବର୍ଷ ।

ତେଣୁ କାହାରିକୁ ଜାଣିବା ବା ଜାଣିସାରି ଭକ୍ତି କରିବା ଓ ଭକ୍ତି କରିବା ପରେ ସମୟ ଅସମୟରେ ତାଙ୍କ ଉପରେ ଭରସା ରଖିବା ଓ ସେ ଅସମର୍ଥ ଓ ଅକିଞ୍ଚନଙ୍କୁ ସାହାଯ୍ୟ କରିବା—ଏତକ ହେଉଛି ସଂସାରର ସାଧାରଣ ଅନୁଭବ. ସେ ଯୋଗ ପଡ଼ିଲେ ସେତକ ଘଟେ ।

ସମସ୍ତେ ସବୁଠାରେ ଥାଆନ୍ତି କିନ୍ତୁ ମିଳନ୍ତି ନାହିଁ ।

ପ୍ରତ୍ୟେକ ସଂସାରୀ ସେଇ କଥା କହେ—ବେଳ ନ ଆସିବାଯାଏ କାହାରିକୁ କିଛି ମିଳେ ନାହିଁ ।

ଏମିତି ମିଳିଯିବାକୁ କୁହାଯାଏ ବାହାଘର । ସମସ୍ତେ ଜାଣନ୍ତି ଯେ ଯୋଗ ନ ଫିଟିବା ଯାଏ ବାହାଘର ଅସମ୍ଭବ । ଆଉ ଅସଂଖ୍ୟ ଲୋକଙ୍କ ଭିତରେ ଯେଉଁ ଜଣକ ଯାହା ପାଇଁ ଆସେ—ସେ ହେଉଛି ସେ ଲୋକର ଭାଗ୍ୟ । ଏଇ ଭାଗ୍ୟକୁ କୁହାଯାଏ ଦଇବ ।

ଦଇବ ହେଉଛି ପ୍ରତ୍ୟେକ ମଣିଷର ଠାକୁର । ସେଥିରେ ମଣିଷ ଦଇବକୁ ମାନିବା ବା ନ ମାନିବା କିଛି ଲାଭ କ୍ଷତି କରେ ନାହିଁ ।

ଦଇବ ହେଉଛି ସ୍ୱାମୀ । ଦଇବ ହେଉଛି ସ୍ତ୍ରୀ । ଦଇବ ହେଉଛି ପରିବାର । ଦଇବ ହେଉଛି ସଂସାର । ଏଇ ଦଇବ ପାଖରେ ଆମେ ଅକିଞ୍ଚନ ।

ସଂସାରରେ କାଡ଼ ଆପଣ କରୁଥିଲାବେଳେ ଯେତେବେଳେ ଶଗଡ଼ର ନାଲି ଫିଟିଯାଏ ଅବା ଅଖ ହୁଗୁଳିଯାଏ ଅବା ବଳଦ ବନା

କାଟଣରେ ହନୁମାଙ୍କ ପଛରୁ ଖସିଯାଏ—ସେତେବେଳେ ଜାଣି ହୁଏ ଦଇବ କ ପ୍ରକାରର ମାହାତ୍ମ୍ୟକ ବ୍ୟବସ୍ଥା ।

ଆଲୁଅ ଜାଳି, ବାଜା ବଜାଇ, ନିମନ୍ତ୍ରଣ ପତ୍ର ଛପାଇ ଓ ବାଣ ଫୁଟାଇ ପଟୁଆର କରିବା ବେଳେ ଦଇବ ଆମ ସାଙ୍ଗରେ ଚାଲିଥାଏ । ସେ ଯାହାଙ୍କୁ ଯେଉଁଠି ଖଞ୍ଜି ଦେଇଛି ତାକୁ ତଲାସ କରି ଆଣି ଛନ୍ଦିବା ପାଇଁ ଦଇବ ଚାଲିଥାଏ ।

ସେଥିପାଇଁ ଦଇବ ହେଉଛି ଠାକୁର ।

ଠାକୁର ମଣିଷକୁ ଶିଖାଇବେ କେମିତି ? ପାଠ ଦେଲେ ସିନା ପାଠ ପଢ଼ାଇବେ । ପାଠ ନ ଦେଲେ ସମସ୍ତେ ଯାଇ ଖେଳିବେ । ଖେଳରେ ସଂସାର ଚାଲେ ନାହିଁ । ସିଏ ଚାଲେ କାମରେ ।

ଏତକ ମଣିଷକୁ ଭଲ କରି ବୁଝାଇବାକୁ କାମର ସୃଷ୍ଟି ହେଉଛି । କାମ ମଧ୍ୟ ଜଣକିଆ ତାସ ଖେଳ—ପେସେନସ ଖେଳ ନୁହେଁ ।

ଅଧିକା ଲୋକ ଦରକାର । ନ ହେଲେ ସଂସାରର ଖେଳ ହେଇ ପାରିବ ନାହିଁ । ଆଉ ଈଶ୍ୱର ଫେଲ ମାରିଯିବେ ।

ଫେଲ ହେବାକୁ କେହି ଖୋଜନ୍ତି ନାହିଁ । ଈଶ୍ୱର ବି ଖୋଜନ୍ତି ନାହିଁ । ମଣିଷ ତ କେବେ ଖୋଜେ ନାହିଁ । କାମ ନ ଥିଲେ କିଏ କେମିତି ଫେଲ ମାରିବ । ଆଉ ଫେଲ ନ ହେଲେ ଈଶ୍ୱରଙ୍କୁ ଅବା କିଏ କାହିଁକି ମନେ ପକାଇବ ?

ସୃଷ୍ଟି ଆରମ୍ଭ ହେଲାବେଳେ ଠାକୁର ଯେତେବେଳେ ମଣିଷ ସର୍ଜନା କଲେ ସେ ଭାବିଥିଲେ ଯେ ମଣିଷମାନେ ସଂସାର ଚଳାଇବେ । କିନ୍ତୁ ମଣିଷଙ୍କର ଯେମିତି ବୁଦ୍ଧି ହୋଇଗଲା ଗୋଟିଏଗୋଟିଏ ହୋଇ ଚାଲିଲେ ତପସ୍ୟା କରିବାକୁ ଓ ଠାକୁରଙ୍କର ନଜର ହେବା ପାଇଁ ।

ଇଏ ତ ଈଶ୍ୱରଙ୍କର ଇଚ୍ଛା ନୁହେଁ । ତାହାହେଲେ ମଣିଷ ସୃଷ୍ଟି କରିବା ଅକାରଣ । ଈଶ୍ୱର ଫେଲ ହେଲେ । କାରଣ ମଣିଷ ସଂସାରକୁ ଚାହିଁଲା ନାହିଁ ।

ଫେଲ ହେଲେ ରାଗ ଆସେ । ସେ ସେଇଠୁ ମଣିଷ ଭିତରେ ପୁରୁଷ ଓ ସ୍ତ୍ରୀ ସୃଷ୍ଟି କରି ତାଙ୍କ ଭିତରେ ଚୁମ୍ବକ ଖଞ୍ଜିଦେଲେ । ଗୋଟିଏ ଚାଲିଲେ ଆଉଟି ଚାଲିବ । ଆଉ ଚାଲିବ ଅବା କ'ଣ ପାଇଁ ?--ବସି ରହି ଈଶ୍ୱରଙ୍କୁ ପାଶୋରି ଦେଇ ଆପଣା ଆପଣା ଭିତରେ ଚଢ଼ାଚଢ଼ି ହେବ ।

କିଏ କାହାକୁ କେତେ ଭଲ କରି ଚିହ୍ନି ପାରୁଛି—ସେଥିରୁ ହବ କଳି, ମୁହଁ ଫୁଲା, ରୁଷାରୁଷି ଓ ଶେଷକୁ ପିଟାପିଟି । ତାହାହେଲେ ସଂସାରରେ ଅନେକ କାମ ସୃଷ୍ଟି ହବ । ଆଉ ସେଇ କାମରେ ସମସ୍ତେ ଧନ୍ଦି ହେବେ । ଈଶ୍ୱରଙ୍କର ସୃଷ୍ଟି ଠିକ୍ ଶଗଡ଼ ପରି ଚାଲିବ ।

ଗୋଲ ଚକ ଉପର ତଳ ହେଇ ହେଇ ଚାଲିଥିବ । ଆଉ ଶଗଡ଼ର ମାଲିକ ଓ ଶଗଡ଼ର ସବାରି ସମସ୍ତେ ମେଁ ମେଁ ହେଉଥିବେ ।

ଇଏ ହେଲା ଈଶ୍ୱରଙ୍କର ସଂସାର ଚଳାଇବାର ନିୟମ । ଏଇ ନିୟମ ଭାଙ୍ଗିଦେବାକୁ ମଣିଷ ତାହାର ବୁଦ୍ଧି ପାଇଲା ଦିନୁ ତିଆରି । କେତେବେଳେ ସେ ଈଶ୍ୱରଙ୍କ ବିରୁଦ୍ଧରେ ବିଦ୍ରୋହ କରେ । ପୁଣି କେତେବେଳେ ସେ ଈଶ୍ୱରଙ୍କର ଗୁମାସ୍ତାମାନଙ୍କୁ ହଲପଟା କରେ । କିନ୍ତୁ ସୁବିଧା ହେଉ ଅବା ନ ହେଉ ମନରେ ଅଭିମାନ ମେଣ୍ଟିଯାଏ । ଆଉ ସେ ଯାଇ ଶୋଇପଡ଼େ—କେତେବେଳେ ବିଛଣାରେ ଅବା କେତେବେଳେ ମଶାଣିରେ ।

କଥା ଶେଷ । ସେଇ କଥା ପାଣି ଉପରର ପାଣିଫୋଟକା ପରି ହଜିଯାଏ । ରହିଯାଏ କେବେକେବେ ପଦେ କଥା—ତାକୁ ସମସ୍ତେ କହନ୍ତି ସଂସାର ।

ଏଇ ସଂସାରରେ ଗୋଟିଏ ନିୟମ ଚାଲେ ନାହିଁ । ଏଠି ଚାଲେ ଅସଂଖ୍ୟ ନିୟମ । ଖାଇବା, ପିନ୍ଧିବା, ରହିବା, ଚାଲିବା ଓ ମରିବାରେ ମଧ୍ୟ ଅସଂଖ୍ୟ ନିୟମ ।

ଗାଡ଼ି ଧକ୍କା ଖାଇଲା ପରି ଏଇ ନିୟମମାନ ଆପଣା ଆପଣା ଭିତରେ ବାଜାବାଜି ହୁଅନ୍ତି । ନିୟମ ଚଳେଇବା ଲୋକ ମଧ୍ୟ ମରାମରି ହୁଅନ୍ତି ।

ଯେମିତି ହେଉଛି ସ୍ୱାମୀ—ସ୍ତ୍ରୀଙ୍କର ସଂସାର । ସେଠି ମଧ୍ୟ ଚୁଲେ ଅନେକ ଆଇନ । ତେଣୁ ଯେଉଁଠି ଥାଏ ଆଇନର ଝାମେଲା—ଯାହାକୁ ଆମେ କହୁ ଆଇନ ଶୃଙ୍ଖଳା ପରିସ୍ଥିତି ।

ସେଇଟା ବିଗିଡ଼ିଗଲେ ରାଜ୍ୟ ଭାଙ୍ଗେ । ରାଜା ଯାଆନ୍ତି । ରକ୍ତମୁଖା ହୋଇ ପ୍ରଜା ଘରର ରାସ୍ତା ବା ରାଜଦାଣ୍ଡରେ ଧାଁଧପଡ଼ କରେ । ଝଡ଼ ପରି ପୁଣି ଥରେ ଶାନ୍ତ ହୋଇଯାଏ ।

ଇଏ ଯେମିତି ଗୋଟିଏ ସ୍ୱାମୀ-ସ୍ତ୍ରୀ କଥା । ଝିଅ ପୁଅ ହାତ ଧରାଧରି ହୋଇ ବେଦୀରୁ ଉଠିଲେ । ହେଲେ ସ୍ୱାମୀ-ସ୍ତ୍ରୀ । ସେଇ ସମ୍ବନ୍ଧକୁ ପକ୍କା କରିବା ପାଇଁ ଦରକାର ହୁଏ ଗୋଟିଏ ବନ୍ଧନ । ଦୁଇ ତିନୋଟି ଚକିଆ । ଆଉ କିଛି ଫାଜିଲାମି । ତା' ପରେ ସମ୍ବନ୍ଧ ପକ୍କା ହୋଇଯାଏ—ଜଣେ ଆର ଜଣକର ହୋଇଗଲା ।

ପୋଷାକ ପିନ୍ଧିସାରି ଆଖିରେ ଚଷମା ଅବା ମୁଣ୍ଡରେ ଟୋପି ପଗଡ଼ି ଓ ପାଦରେ କଠଉ କି ଜୋତା ନ ପିନ୍ଧିଲେ ବାହାର ପାଇଁ ପୂରା କାଇଦା ହୁଏ ନାହିଁ । ସେମିତି ଏକାଠି ଓଳିଏ ଖଣ୍ଡେ ନ ଶୋଇଲେ ସମ୍ବନ୍ଧ ବି ପକ୍କା ହୁଏ ନାହିଁ ।

ଭଗବାନ ତାକୁ କହନ୍ତି—ଡାଲି ତିଅଣର ବଘର ଛୁଙ୍କ । ଏଇଠି ଥାଏ ସବୁଯାକ ମଜା । ଡାଲି କି ପରିବାରେ ଚଟକ ନ ରହୁ ସବୁଯାକ ବଘରଣାରେ ରଖା ହୁଏ ।

ଏଇ ବଘରଣାର ନାଁ ହେଲା—ମାୟା । ସଂସାରରେ ଚଳିବା ପାଇଁ ଏଇଟା ଭାରି ଦରକାର—ମୁହଁ ଉପରର ସ୍ନୋ ପାଉଡ଼ର ଅବା ମୁଣ୍ଡକୁଣ୍ଡା ପରି । ନ ହେଲେ ସଂସାର ଅଚଳ । ବଞ୍ଚିବା ନିରର୍ଥକ । ତେଣୁ ମାୟା ନ ଲଗାଇଲେ ସଂସାରଟା ଛୁଚ୍ଛା ଭାତ ।

ଜୀବନରେ ଟିକିଏ ମହକ ଅଣାଇବା ପାଇଁ ବାହାଘରର ବ୍ୟବସ୍ଥା—ସ୍ୱାମୀଟିଏ ଅବା ସ୍ତ୍ରୀଟିଏ । ଦୁହେଁ ଦୁହିଁଙ୍କ ପାଇଁ ଦରକାର । ଘର ଏଣ୍ଟ୍ରି ବନ୍ଦ ହେଲେ ରାସ୍ତାକୁ ଗଳିବେ କେ ସେଥିରୁ । ଗୋଟିଏ ଥିଲେ ଜଣେ ତ ବାସନା ଭୋଗ କରିବ ।

ଖାଲି ସେତିକ ନୁହେଁ—ସାତ୍ମାପଡ଼ଶା, ଅଜଣା ଅଶୁଣା ଲୋକ ବ ବାସନା ଭୋଗ କରିବେ । ସେମାନଙ୍କ ପାଇଁ ଏଇଟା ହେଲ—ମାଗଣା ସିନେମା । ମାଲିକ ଓ ମାଲିକାଣୀଙ୍କ ପାଇଁ ଏଇଟା ଷ୍ଟେଜ ।

ଏହି ସବୁ ନେଇ ସେଇଟି ଗୋଟିଏ ଯୁଗ ବା ଯୁଗ୍ମ ବା ଯୋଡ଼ ବା ପେଆର୍ । ତାସ ଖେଳର ରଜାରାଣୀ ପରି—ଯାହାର ପାଓ୍ୱାର ଯେତେ କମ୍ ବା ବେଶି ହେଉଥାଉ ।

ତାଙ୍କର ଗୋଟିଏ ଗୋଟିଏ ନାଁ ଦରକାର—ଜଣେ କୃଷ୍ଣ ଅର ଜଣକ ହେଲ ରାଧା । ରାଧାକୃଷ୍ଣ ଗୋଟିଏ ଭଲ ଯୁଗଳ ବୋଲି ଶାଶୁ ନଣନ୍ଦ ମଧ୍ୟ କହୁଥିଲେ । ଏଇଠୁ ଆରମ୍ଭ ହେଲ ଜୀବନ ।

ବାହାଘର ଆଗରୁ ଯେତେଟା ଅଧ୍ୟାୟ ହେଇଯାଇଥାଏ ସେଥିରେ ଜୀବନର ଗୁରୁଦାୟିତ୍ୱ ନ ଥାଏ । ସେତିକ ଆରମ୍ଭ ହୁଏ ବାହାଘର ପରେ ପରେ ।

ସେଥିପାଇଁ ବହୁତ ବାଛୁବିଚାରି ପେଆର ଠିକ୍ କରିବାକୁ ହୁଏ । ଓଜନ, ଲମ୍ବା, ପାଠପଢ଼ା, ଘରର ଚଳନବସ୍ତ ସବୁ ଠିକ୍ ମେଣ୍ଟେଇବାକୁ ପଡ଼ିବ ।

ଏଇ ମନ୍ତ୍ରମନ୍ତ୍ର ବଗିଡ଼ା ଧଇଲେ ନାଚନାଡ଼ ପଡ଼ିଯିବ । ଅର୍ଥାତ୍ ବର କନ୍ୟା ଏକା ବର୍ଗର ନ ହୋଇ ବିଷମ ବର୍ଗରେ ପଡ଼ିବେ । ତେଣିକି ଧନ ରତ୍ନ କଳ ତକବଳ ସାର ! ଏଇ ଘର କଳରୁ ନିଆଁ ଉଠି କେଜାଣି କେତେଦୂର ମିବ—କିଏ କହିବ ?

ସେଥିପାଇଁ ଦରକାର ଜାତକ ମେଳକ ।

ଏବେ ସେଇ ମେଳକ ଭେଜାଲ୍ ଧରିଗଲାଣି । ଝିଅର ବୟସ ବଢ଼ିଲା । ବାଛୁଆର ହେଇଗଲା । ବାପା ମାଆ ଯାଇ ବୟସ କମାଇ ଦେଲେଣି । ପଣ୍ଡିତ ବ ତିଆର୍ । ଫିସ୍ ଟଙ୍କା ପେଠ ହେଲେ ସେ ନୌକରାଣୀ ଜାତକକୁ ନେଇ ମହାରାଣୀ ଜାତକ କରିଦେବ ।

ସେଥିପାଇଁ ଭୂଲୁ ସମ୍ଭାବନା ଥିଆ ହେଇଛି । ଯେମିତି ଖୋଜିବ ସେମିତି ପାଇବ । ଖାଲି ଦବାନବା କରି ପାରିଲେ ହେଇଗଲା ।

ଏଣେ ଆଜ ଗୋଟିଏ ବଡ଼ ସମସ୍ୟା । ଓଡ଼ିଶା ମୂଲକରେ ଝିଅ ସଂଖ୍ୟା ପୁଅ ଠାରୁ ବେଶି । ଆଜି ରୋଜଗାରିଆ ପୁଅ ସଂଖ୍ୟା ଖାଲି ଘରର ଅଲଅଳ ଝିଅଙ୍କର ସଂଖ୍ୟାଠାରୁ ବହୁତ ବହୁତ କମ୍ । ଏବେ ବାହାଘର ହୋଇଗଲାଣି କାରବାର । ତେଣୁ କଞ୍ଚା ଠକାଠକ ସେଥିରେ ଆସିଗଲାଣି ।

ଏଇ ପରିସ୍ଥିତିରେ ରୋଜଗାରିଆ ପୁଅ ଆଜି ତାହା ତଳକୁ ଥିଲାବାଲା ଅବା ଭଲ ଚଳିଲାବାଲା ଘରର ପାଠୁଆ ପୁଅଙ୍କୁ ଠକେଇବାକୁ ଝିଅର ବାପାମାଆ ବେହାଲ ।

ରାଧା ଓ କୃଷ୍ଣଙ୍କର ସେଇ ଯୋଗ ପଡ଼ିଗଲା । ରାଧା ଆନ୍ତର୍ଜାତୀୟ ଓ ନିଖିଳ ଭାରତୀୟ ସ୍ତରର ମାନସ ପ୍ରତିମା ଖୋଜି ଖୋଜି ଶେଷରେ ଓଡ଼ିଆ ମୂଲକରେ ପହଞ୍ଚିଗଲା । ଏଠି ଏସବୁ ବଡ଼ିଆ ବଡ଼ିଆ ଜିନିଷର କାରବାର ନାହିଁ ।

କୃଷ୍ଣ ବି ନିଜର ଓଲି ମଣରେ କ'ଣ ଗୋଟାଏ ବଡ଼ିଆ ରାଧାଟିଏ ପାଇବାକୁ ଗୃହଆଡ଼େ ବୁଲି ବୁଲି ଶେଷରେ ଆସି ଚୁପ୍ ହୋଇ ବସିଗଲା ନିଜ ଘରେ ।

ଓଡ଼ିଶା ମାଟି ଗୋଟିଏ କଥାକୁ ଭଲ କରି ବୁଝେ—କ'ଣ ଅଛି ତାହାର ଘରେ ? ଆଜି ସେ ଝିଅକୁ କ'ଣ ଦେଇ ସୁଖ ସୁବିଧାରେ ରଖାଇ ପାରିବ ?

ଏସବୁ ପ୍ରଶ୍ନର କିଛି କିଛି ଉତ୍ତର ମିଳେ ସରକାରୀ ଚାକିରିରେ । ଅବଶ୍ୟ ସେଠି ଶ୍ରେଣୀ ଅନୁସାରେ ହାଇସ୍କୁଲ, ଯୁକ୍ତ ଦୁଇ, ଯୁକ୍ତ ତିନି ଆଦି ବିଭିନ୍ନ ସ୍ତରର ପ୍ରଶ୍ନ ଓ ଉତ୍ତର ରହିଛି । କିନ୍ତୁ ବେସରକାରୀ ସ୍ତରରେ ଏଇ ସବୁ ପ୍ରଶ୍ନ ଯେମିତି ଭୁଲ, ସେମିତି ଏହାର ଉତ୍ତର କେହି ଖୋଜନ୍ତି ନାହିଁ ।

ଏହି କାରଣରୁ କୃଷ୍ଣ ବରର ଅନ୍ଧାରରେ ପଡ଼ି ମୁହିଁଟାଣ କରି ପଡ଼ିଥାଏ । ମୁହଁ ଟାଣରୁ ଟଙ୍କା ବାହାରେ ନାହିଁ—ଏତିକି ବୁଝିଲାବେଳକୁ ତାହାର ନିଶ ପାଚି ଆସିଲାଣି । କିନ୍ତୁ ରାଧା ଆସିପାରିନାହାନ୍ତି ।

ନ ଆସିଲେ ନ ଆସନ୍ତୁ—ସେ ଏକୁଟିଆ ଆଗ ହୋଇ ରହିଯିବ । ସେଇ ଜୀବନରେ ଆନନ୍ଦ ଅଛି ବୋଲି କଲେଜ ଓ ବିଶ୍ୱବିଦ୍ୟାଳୟରେ ଅନେକ ଲୋକ କହନ୍ତି । କିନ୍ତୁ ଏକୁଟିଆ ଜୀବନ ବଡ଼ ଦୁଃଖମାତ୍ର ।

ଯୋଗ୍ୟତା ଥାଇ ଏକୁଟିଆ ରହିବା ଓ ଯୋଗ୍ୟତା ନାହିଁଥିଆ ହେବାରୁ ଏକୁଟିଆ ରହିବା—ଦୁଇଟି ବହୁତ ଫରକ । ଗୋଟିକୁ ସମସ୍ତେ ଆଗ୍ରହ ଓ ଉତ୍ସାହରେ ଗ୍ରହଣ କରନ୍ତି । ଆରଟିକୁ ସେମିତି ସମସ୍ତେ ହେୟ ଜ୍ଞାନ କରି ପଛରେ ବସନ୍ତି—ଆହେ ବଙ୍କା ମୂରତି, ଯଦି ତୁମ ଜୀବନରେ ଭଲ କିଛି ହୋଇ ନ ପାରିଲା ତେବେ ଘରସଂସାର କରି ସବୁ ଯାଅ ।

ଓଡ଼ିଶା ମାଟିରେ ଏକୁଟିଆ ରହିବା ପୋଷାଏ ନାହିଁ । କାରଣ ଏଠି ଆଦର୍ଶ କଥା ହେଲା—ତୁମେ ମତେ କ'ଣ ଦେଇପାରିବ ? କିନ୍ତୁ ମୁଁ ତୁମକୁ କିଛି ଦେବି ନାହିଁ ।

ଏଇଟା ତ ମଣିଷର ଆଦର୍ଶବାଦୀ ଭାଷା ନୁହେଁ । ଏଇଟା କାରବାରୀ ବଣିଆର ଭାଷା ।

ଏହି ନାପସନ୍ଦିଆ କଥାମାନ ଶୁଣି ଶୁଣି କୃଷ୍ଣ ଲୁଚିବାକୁ ଆରମ୍ଭ କରିଥାଏ କାରଣ ଏଇ କାରବାରୀ ସମାଜରେ ତୁମର ମନକୁ ଚଳିସିବାକୁ କେହି ସମୟ ପାଉନାହାନ୍ତି । ସମସ୍ତଙ୍କର ଦରକାର ଧନ ଓ ଧନର ଅଟକଳ । ଜମି ପଛକେ ଆମର ନ ହେଉ । ଜମିର କିସମ ଆମେ ଜାଣିବା ନିହାତି ଦରକାର ।

ଓଡ଼ିଆ ମୁଲକ ଛାଡ଼ି କୃଷ୍ଣ ଯାଇ ପାରୁ ନ ଥାଏ । ଶିବ ଅବା କେମିତି ? ବାହାରେ ଯେ ବିଶେଷ ସୁବିଧା ନାହିଁ—ଏତିକ ସେ ଭଲ କରି ବୁଝିଥାଏ । ସେଠି ସିନା କାମ କରିବାର ସୁବିଧା ଅଛି କିନ୍ତୁ ପଗାର ଠିକ୍ ଠିକ୍ ଆଣିବାର ସୁବିଧା ନାହିଁ । ଏହା ଛଡ଼ା ଓଡ଼ିଆ ଲୋକ ଓଡ଼ିଆ ମୁଲକରେ ଯେମିତି ଲଗାମଛଡ଼ା ହୋଇ ରହିପାରିବ, ସେତିକର ବିଶେଷ ସୁବିଧା ଅନ୍ୟ ଆଡ଼େ ମିଳେ ନାହିଁ ।

ବାଧରେ କୃଷ୍ଣ ବଚରା ପଡ଼ି ରହିଥାଏ ନଜର ଫାନ୍ଦା ଜଗି । ଫାନ୍ଦ ଛାଡ଼ିଲେ ଅଣଚେନଉଟା ଘାଣ୍ଟା ପଡ଼ିବ । ସେଥିରେ କି ପ୍ରକାରର ବିପଦ ଆପଦ ଅଛି ତାହାର ସୂଚନା କାହିଁ ?

ତେଣୁ କୃଷ୍ଣ ବସି ବସି ବୁଢ଼ା ହେବାରେ ଲାଗିଥାଏ । ଝିଅ ମାନେ ଯେମିତି ପାଠ ପଢ଼ୁଚେ ପଢ଼ୁଚେ ଅଲଅଳୀରୁ ଅଲକ୍ଷଣୀ ହୋଇଯାନ୍ତି ସେମିତି କୃଷ୍ଣ ବଚରା ପଡ଼ିରହିଥାଏ ।

ହେଲେ ଗୋଟାଏ ମଣିଷ ତ । ଅଭିଆଡ଼ା ମଣିଷ । ଢ଼'ଅକ୍ଷର ପାଠ ପଢ଼ିଥିବା ମଣିଷ । ଦରବୁଢ଼ା ହେଲେ ବି ବୁଢ଼ା ତ ହୋଇ ନାହିଁ । ମରିବାକୁ ହୁଏ ତ ଥୋଡ଼ାଏ ଡେରି ଅଛି ।

ଯାହା ବି ହେଉଥାଉ ସେ ମୂଲ୍ୟହୀନ ନୁହେଁ । କାରଣ ଦେହର ଚମ ପରି ମଣିଷ ଉପରେ ଗୋଟାଏ ପ୍ରକାରର ମୂଲ୍ୟ ଲାଗି ରହିଥାଏ ।

ଗୋଡ଼ହାତ ଚଳୁଥିବା ପର୍ଯ୍ୟନ୍ତ ପ୍ରତ୍ୟେକ ମଣିଷ କିଛି ନା କିଛି ମୂଲ୍ୟ ଧରି ରଖିଥାଏ ।

ଈଶ୍ୱର ଭାରି କୌଶଳୀ ।

ସେ ଯଦି ସୁଇଚ୍ ଟିପି ବିଜୁଳି ଆଲୁଅକୁ ଲିଭେଇଲା ପରି ମଣିଷର ମୂଲ୍ୟକୁ ପୂରା ଖସାଇ ଦିଅନ୍ତେ ତାହାହେଲେ ମଣିଷ ବି କିଛି ଉଚିତ ଜ୍ଞାନ ପାଇ ଯାଆନ୍ତା । କିନ୍ତୁ ସେ ସେଇଟା କରିବେ ନାହିଁ ।

ପୂରା ମୂଲ୍ୟହୀନ ହୋଇଗଲେ ସେଇ ମଣିଷ ଗୋଠ ଛାଡ଼ି ଚଳାଇବ । ସେଥିପାଇଁ ସେ ମଣିଷକୁ ଦାମିକା କଲାବେଳେ ଯେମିତି ଧାପେ ଧାପ ଉଠାନ୍ତି ସେମିତି ତାକୁ ଡାଉନ୍ କଲାବେଳେ ଆସ୍ତେ ଆସ୍ତେ ଖସାନ୍ତି ।

କୃଷ୍ଣ ଏଇ କଥାଟି ଦେଖିଥିଲା । ତାହାର ମନର ଇନ୍ଦ୍ରଧନୁ କୁଆଡ଼େ ଲୁଚି ଗଲାଣି । କିନ୍ତୁ କୃଷ୍ଣର ଆଖି ଦୁଇଟି ଇନ୍ଦ୍ରଧନୁକୁ ଖୋଜୁଛି । ଏଣେ ମେଘ ପଳାଇଲାଣି । ଖରା ଖସିଗଲାଣି । ତୃଷ୍ଣାଟି ଲିଭିଗଲାଣି । ରହି ଯାଇଛି କିଛି ସ୍ମୃତି—ଆଉ କିଛି ଆଶା ।

ଦୁଇଟି ଯାକ ହେଉଛୁ ପୋଲ ପଦାର୍ଥ । ଏଇ ଦୁଇଟି ହେଉଛୁ ମାୟା ।

ଆଉ. ମାୟା ପଛରେ ମଣିଷ ଧାଇଁବାକୁ ରାଜି ନ ହେଲେ ସାରା ଦୁନିଆରେ ହାଟ ବସିଯିବ—ଦେଖ ମ, ଏଇ ଅଭଲକୁ । ସେ ମାୟା ପଛରେ ଗୋଡ଼ଉ ନାହିଁ । ସ୍ତ୍ରୀଙ୍କ ପଛରେ ଧାଉଁ ନାହିଁ । ଧନ ପଛରେ ଧାଉଁ ନାହିଁ ।

ତେବେ ସେ ଈଶ୍ୱରଙ୍କୁ କ'ଣ ମାନୁଥିବ ? କେବେ ନୁହେଁ । କାରଣ ମାୟା ମୋହରେ ଯିଏ ହାଲପଟା ହେବାକୁ ରାଜି ନୁହେଁ ସିଏ ହେଉଛୁ ଈଶ୍ୱର-ଦ୍ରୋହୀ ଆଉ ଯେଉଁମାନେ ସକାଳୁ ସଞ୍ଜଯାଏ ଲଟପଟ ଓ ଛଟପଟ ହେଉଥାନ୍ତି ତାଙ୍କୁ କୁହାଯାଏ ସଚ୍ଚା ଠାକୁର ଭକ୍ତ ।

ଇଏ ହେଉଛୁ କୃଷ୍ଣର ଛବ । ସବୁ ଅଛୁ । କିନ୍ତୁ ଧରିବାକୁ ହେବ ଯେ ତାହାର କିଛୁ ନାହିଁ । କାରଣ ତାହାର ଚାକିରି ନାହିଁ । ଚାକିରି ନ ଥିଲେ ଟଙ୍କା ଆସୁନାହିଁ । ଚାକିରି ନ ଥିଲେ ତାହାର ବେଳ କଟୁ ନାହିଁ । ସେ ବେକାର ।

ବେକାର ହେଇ ହୁଏତ ଥୋଡ଼ାଏ ଏଣ୍ଟୁ ତେଣ୍ଟୁ ଭାବିବ । ଭାବିଲେ ଦେହ ଶୁଖେ । ଭାବିବା ପାଇଁ ଅନୁଭବର ମାଲମସଲା ଦରକାର ବସ୍ତୁରର ଭାବିବା ପାଇଁ ମଧ୍ୟ ସୁବିଧା ନାହିଁ ।

ହେଲା ଏବେ ଚାକିରି ନ ହେଲା ଆଉ ପଦା ଟଙ୍କା ଘରେ ନ ପଶିଲା ସେ କ'ଣ ଘରୁ ଖାଇ ଘୋଡ଼ା ଆଗରେ ଧାଇଁ ପାରନ୍ତା ନାହିଁ ? ସେଥିରେ ତ ଗୋଟାଏ କାମ ତାଙ୍କୁ ମିଳି ଯାଉଥାନ୍ତା । ଟଙ୍କା ଯିନା ଭାଗ୍ୟ ଯୋଗୁ ଆସେ । ଘରୁ ଖାଇ ଘୋଡ଼ା ଆଗରେ ଧାଇଁବା କାମ ନିଜର ମନର ବଳ ଯୋଗୁଁ କେବଳ ଆସିଥାଏ ।

ନା । ଲୋକଟା ହତଭାଗ୍ୟ । ତାହାର ଦେହ ଅଛୁ । ମନ ଥିଲା —ଏବେ ମନଟା ଶୋଇ ପଡ଼ୁଛି । ମନ ଥିଲେ ବୁଦ୍ଧି ଅବଶ୍ୟ ଅଛୁ । ତେବେ ମାଲିକ ମନଟା ଶୋଇ ପଡ଼ିବାରୁ ବୁଦ୍ଧି ବି ଦରିଆଁ ରହି ତା'କୁ ଚାହିଁ ବସିଛୁ ।

କୃଷ୍ଣର ଏମିତି ଅନେକ ଅସୁବିଧା । ମନ ଅଛି—କାମ ନାହିଁ । ଏଇ ରାଜ୍ୟରେ ଦଳେ ଭଲୁ ଅଛନ୍ତି ଯେ କାମ ଯୋଗାଇ ପାରୁନାହାନ୍ତି ।

ଅଥଚ ଫୁଟବଲ, କ୍ରିକେଟ ମ୍ୟାଚ୍, ବାଡମିଣ୍ଟନ ଟୁର୍ଣ୍ଣାମେଣ୍ଟ, ତାସର ବ୍ରିଜ ଖେଳ, ଚେସ୍ ଖେଳ, ଶେଷରେ ବାଗୁଡ଼ି ଅବା କବାଡ଼ି ଖେଳ ହରଦମ୍ ଏଠି ସେଠି ଆରମ୍ଭ କଲେ ପୁଣି ଏ ଖେଳିବେ ଆଉ ଦଳେ ଦେଖିବେ । ତାହାହେଲେ କୃଷ୍ଣ ଆଉ ବେକାର ହୋଇପାରନ୍ତା ନାହିଁ ।

ସେ ବେକାର ରହିଲେ ବାହା ହବ କେମିତି ? ତେଲିଆ ମୁଣ୍ଡରେ ତେଲ ଘଷି ଗୋଟାଏ ବେକାର ଆଉ ଗୋଟିଏ ବେକାର ସୃଷ୍ଟି କରୁଛି । ତେଣେ ଗୋଟିଏ ଝିଅ ବେକାର ହୋଇଗଲାଣି । କୁକୁର ପିନ୍ଧା ଗ୍ରେଟ ଜଗିବ । ଝିଅ କ'ଣ ଯାଇ ହଳ କରିବ ବିଲରେ ? ଗ୍ରେଟ ନ ଥିଲେ କୁକୁର ବେକାର ।

ଆଉ ଶ୍ରୀକର ନ ଥିଲେ କୃଷ୍ଣ ବେକାର । ପାଠଶାଠ ସାଙ୍ଗରେ ଶ୍ରୀକରର ସମ୍ବନ୍ଧ ନାହିଁ । ଦେହ ସାଙ୍ଗରେ ମନର ବି ସେମିତି ବହୁତ ସମ୍ବନ୍ଧ କାହିଁ ? ଆଉ ମନ ଥିଲେ ବୁଦ୍ଧି ଅବା ଗଜୁରିବ କାହିଁକି ?

ମଣିଷ ହେଉଛି ଗୋଟିଏ ସାଇକଲ୍ । ତାହାର ଚକରେ ପବନ ନ ଥିଲେ ଅବା ଚେନ୍‌ରେ ଶିକୁଳି ନ ଥିଲେ ସାଇକଲ ବେକାର । ସେମିତି ମନ ଓ ବୁଦ୍ଧି ଥାଇ ମଧ୍ୟ ଦେହ ବେକାର ହୋଇପାରେ । ଆଉ ଘର ଦୁଆର, ବହି ପାଠ ସବୁଥାଇ ମଧ୍ୟ ମଣିଷ ବେକାର ହୋଇପାରେ ।

କିନ୍ତୁ ଆଶ୍ଚର୍ଯ୍ୟ କଥା ଯେ ବୁଦ୍ଧି ଓ ମନ ନାକଷିଆ ଥିଲେ ବି ମଣିଷ ବେକାର ନ ହୋଇ କାମିକା ଭିତରେ ଗଣା ଯାଇପାରେ । ଯେମିତି ଫାଷ୍ଟକ୍ଲାସ ଡ଼ିଗ୍ରି ବାଲା ବେକାର । କିନ୍ତୁ ଥାର୍ଡ଼ କ୍ଲାସ ଲୋକ ଯାଇ ଚଉକିରେ ବସିଯାଉଛି ।

ସେ ଯାହାହେଉ ଅଭଲ କ୍ଲାସ ଅବା ଗାନ୍ଧୀ କ୍ଲସ୍ ଯେଉଁ କ୍ଲାସର ହେଉଥାଉ କୃଷ୍ଣ ଥିଲା ବେକାର । ସେତେବେଳେ ତାଙ୍କୁ ରାଧା ଆଖି ପକେଇଥିଲେ ।

କୃଷ୍ଣର ବଦ୍ଧମୂଳ ଧାରଣା ଥିଲା ଯେ ସେ ନଜେ ଯାଇ କେଉଁଠି କଏ ରହୁଛନ୍ତ ଉଣ୍ଡି ସେଠି ମୁହଁ ହଲେଇବ । ସେ ଜାଣି ନ ଥିଲା ଯେ ତାଙ୍କୁ ଉଣ୍ଡିବାକୁ ମଧ୍ୟ ଲୋକ ବାହାରଲେଣି ।

ଦେହ ଛୁଇଁକୁ ଧରଲା ପର ରାଧା ଓ କୃଷ୍ଣ ପରସ୍ପର ଦେହ ଓ ଛୁଇ ହେବାକୁ ତିଆର ।

କନ୍ତୁ କୃଷ୍ଣ ଘର ଡରକୁଳା । ହଦାତ ଦୂରରେ ଠିଆ ହୋଇ ପ୍ରେମିକର ବାଣୀ ପଠାଇବାରେ ଯେତକ ପାରଙ୍ଗମ, ପାଖକୁ ଲାଗି ଆସିଲେ ସେ ସେତକ ଡରକୁରା—ଠିକ୍ ପ୍ରଜାପତ ପର ।

କୃଷ୍ଣ ଯାଇ ରାଧା ପାଖରେ ମୁହଁ ହଲାଉଥିଲା । ରାଧା ଅଳ୍ପ ଦନେ ଖଣ୍ଡେ ଗୃହଁ ଦେଖିଲା ବେକାରଟାଏ । ମନ୍ଦ କ'ଣ ହେବ ?

ବୟସ ଗୁଡ଼ାଏ ହେଇ ନାହିଁ ତ । ଗୁଡ଼ାଏ ପାଠ ପଢ଼ି ନାହିଁ । ଅଳ୍ପ ଖାଇବାକୁ ଅଳ୍ପ କିଛୁ ଅଛି । କଥା ବହୁତ କହୁଛି—ଢେଣ୍ଟ କର୍ମକୋଡ଼ୀଟାଏ ।

ଯୁଆଠୁ ଭଲ କ'ଣ ମିଳବ ? ଓଡ଼ଆମାନେ କ'ଣ ଯାଇ ହମାଳୟ ଚଢ଼ିବେ ନା କନ୍ୟାକୁମାରୀରୁ ଲଙ୍କାକୁ ସମୁଦ୍ରରେ ପହଁରବାକୁ ବାହାରବେ । ଏମାନେ ହେଲେ ଆମର କିଆବୁଦା ବାଘ—ବଲୁଆ ମହାରାଜା ।

ଏଥିରୁ ଗୋଟିଏ ଯଦ୍ଧ ଆସି ମୁହଁ ଦେଖାଇଲଣି, ତେବେ ସେ ନଶ୍ଚେ ଧରାଦେବାକୁ ମନ କଲାଣି । ରାଧା ତାକୁ ଭଲ କର ଦେଖିଲା —ଆଖିରେ ତାହାର ଟାଉକାପଣ ନାହିଁ କନ୍ତୁ ଲାଜର ଇନ୍ଦ୍ରଧନୁ ପଡ଼ୁଛି ।

—କୁଆଡ଼େ ଆଜ ଏଇ ଅସରିମା ଦୁଆରେ ?

—ଏଁ, ଆପଣ ଅଭିଗିନା ? ସତ୍ୟଆଜ୍ଞେ । ଆପଣଙ୍କର ପ୍ରଶଂସା ।

—କ'ଣ ପାଇଁ ?

—ଏଇ ଆପଣଙ୍କର ଯୋଗ୍ୟତା ଓ ଗୁଣ ପାଇଁ ।

—ସତରେ ? କାହିଁ କେହି ତ ଆସି ମୋର ଖାଇବା, ପିନ୍ଧିବା ରହିବା କଥା ପଚାରିଲେ ନାହିଁ ।

—ସେମିତି କ'ଣ କିଏ ପଚାରେ ? ପଚାରିଲେ ଅକଲସଲାମି ଦେବାକୁ ପଡ଼ିପାରେ ।

—ହଁ, ହୋଇପାରେ । ଆପଣଙ୍କର ବଡ଼ା ଲୋକଙ୍କୁ କହିବେ ଯେ ଅକଲସଲାମି ସେ ଲୋକର ମାପ ନେଇ କମ୍ ବେଶି—ଶହେ ହଜାରେ ଟଙ୍କାରୁ ଦି'ଟଙ୍କା ଟଙ୍କାଏ ଯାଏ ।

—ଆପଣ ଏବେ କ'ଣ କରୁଛନ୍ତି ?

— ଏମିତି । ଅନେକ କଥା କରୁଛି । ଆଉ ବି ବହୁତ କଥା କରିବାକୁ ଭାବୁଛି । କିଛି ପକ୍କା ହୋଇ ନାହିଁ ।

—ମୁଁ ଏମିତି ଷ୍ଟେଟ୍‌ଫୋର୍ଡ୍ ଲୋକଙ୍କୁ ପସନ୍ଦ କରେ । ଏମାନେ ମିଛ କହନ୍ତି ନାହିଁ । ମିଛୁଆ ନୁହଁନ୍ତି । ଗାଲୁଆ ବି ନୁହଁନ୍ତି ।

—ମିଛ ଉପରେ କ'ଣ ଆକାଶର ଚନ୍ଦ୍ର ଅଣାଯାଇ ନ ପାରେ ?

—ହଁ, ଅଣାଯାଇ ପାରିବ ଯେ ସେ ହେବ ପାଣି ଉପରର ବା ଦର୍ପଣ ଉପରର ଚନ୍ଦ୍ରର ଛବି ।

—ହଉ, ଛାଡ଼ନ୍ତୁ ସେ କଥା । କ'ଣ ନେବେ ? ଚା, କଫି, କୋକା ଓଭାଲଟିନ ।

—ବାଃ, ଏତେ ଗୁଡ଼ାଏ । ସବୁଯାକ ?

—ଏଇଠୁ ଆରମ୍ଭ ହେଲା ମିଛକଥା ।

—କେମିତି ?

—ସତ କଥା ହେଉଛି ଗୋଟିଏ । ମିଛ କଥା ହେଉଛି ଅନେକ ସଂସାର କେବେହେଲେ ଗୁଡ଼ାଏ କଥା ହୁଏନାହିଁ । କାରଣ ସଂସାର ହେଉଛି ସତ୍ ।

—ଆଚ୍ଛା, ସଂସାର କଥା ବୁଝିବା । ସତ୍ କ ଅସତ୍—ସିଏ କ'ଣ ଆମକୁ ବତେଇ ଦିବ ।····ଯାହା ଇଚ୍ଛା ହେଉଛି ସେଇଆ ହଉନ୍ତୁ ।

—ରୁ' ଦେଉଛି । କାଗଜ ରସ ରୁ' । ଦୁଧ ନାହିଁ । ଗୁଣ୍ଡଦୁଧ ଦେବ ନାହିଁ ।

—କାହିଁକ ?

—ଜବାବ ପାଇବ ଯେ ଦୁଧ ହେଉଛି ସତ୍ । ଗଣ୍ଡଦୁଧ ହେଉଛି ଅସତ୍ । କାଗଜ ରସ ସତ୍ । ନାଲି ବୃଆ ସତ୍ । ଚିନ ସତ୍ । ଆପଣ ବ ସତ୍ ।

ହଦେହଁ ହସିଥିଲେ । ହଦେହଁ ଭାବିଥିଲେ—ମନ୍ଦ କ'ଣ ? ଜୀବନଟା ପ୍ରକୃତରେ ସାହିତ୍ୟ ।

—ହସିଲେ କାହିଁକ ? ରାଧା ପଚ୍ଚରିଲେ ।

—ଏଇ କଥା ଶୁଣି । ଏମିତ ବଢ଼ିଆ କଥା ଶୁଣିବାକୁ ମତେ ଭାରି ଭଲ ଲାଗେ ।

—ବୋଧହୁଏ ଆପଣ ସେମିତକା କଥା କହିବା ଅଭ୍ୟାସ କରୁଛନ୍ତି ।

—ଅଭ୍ୟାସ ନୁହେଁ ଯେ, ତେବେ କହେ । ଶୁଣିବାକୁ ଭଲ ଲାଗୁ ଛି ।

ରାଧାର ଗାଲରେ ସିନ୍ଦୂରିଆ ଛିଟା ହଶିଲା । ରାଧା କହିଲା—କହିଦେଇ ଲାଜ ମାଡ଼ିଲା ବୋଧହୁଏ । ମୁହଁ କାହିଁକ ନାଲ ମାରିଲା ?

—ପିଟିବି ଯେ । କଥା କେମିତ ମୋଡ଼ ନେଉଛି ?

—ହଉ ପିଟ । ମୁଁ ମାଡ଼ ଖାଇବାକୁ ରାଜି ।

କୃଷ୍ଣ ଏଣେ ଛଟ ପଟ ହେଉଥାଏ ପଳାଇବାକୁ । ଏଇ ସ୍ତ୍ରୀ ଗୁଡ଼ିକ ଭାରି ଗୋଳମାଳିଆ । ଥୋପ ପକାଉଛି କ ? ଶାସ୍ତ୍ର ପୁରାଣ ଲେଖୁ-

ଛନ୍ତୁ ସେ ତାଙ୍କଠାରୁ ଦୂରରେ ରହିବାକୁ ଶିଖ ନ ହେଲେ ସେମାନେ ଠକେଇ ନେବେ ।

—କ'ଣ ସବୁ ଭାବନା ଚାଲିଛି ଏଇ ମୁଣ୍ଡଟି ଭିତରେ ?

—କିଛି ନାହିଁ ଖାଲି ତୁମର କଥା ବାଜୁଛି କାନରେ ।

—ସତେ ? ମୋ କଥାର କୁହାଟ ଆସି ବାଜୁଛି ମନରେ । ତାହା ହେଲେ ମୋ'ଠାରୁ ଯେଉଁମାନେ ବହୁତ ଚତୁର ବହୁତ ବିଚକ୍ଷଣ— ସେମାନଙ୍କ ପାଖରେ ଅବସ୍ଥା କ'ଣ ହେବ କେଜାଣି ?

—କିଏ ଆମପରି ଅଗାଡ଼ଙ୍କ ସାଙ୍ଗରେ କଥା କହି ନିଜର ସମୟ ନଷ୍ଟ କରିବ ?

—ମୁଁ ଗୋଟିଏ ଅଗାଡ଼ । ମୁଁ ସମୟ ଦେଇ ଗପିବାକୁ ରାଜି ।

—ଏଁ, ମୋ ସାଙ୍ଗରେ ଗପିବାକୁ ?

—ହଁ । ତମପରି ଲୋକଟିଏ ଖୋଜୁଥିଲି ।

—ତମର ଚରିତ୍ର ଉପରେ ଯଦି କଥା ଉଠେ ?

—ଉଠିପାରେ । କଥାରେ ଚରିତ୍ର ଯାଏ ନାହିଁ ।

—ଅନେକ ଲୋକଙ୍କର ଚରିତ୍ର ଯାଉଛି ?

—ପୁରୁଣାକାଳିଆ ଲୋକଙ୍କର ସେମିତି ହୁଏ ।

—ତମେ କ'ଣ ପୁରୁଣାକାଳିଆ ନୁହଁ ?

—ପୁରୁଣାକାଳିଆ ହେଇ ନୂଆ କାଳରେ କିଏ ଅବା ବଞ୍ଚି ରହିପାରିବ ?

ଚା' ଆସିଲା, ହସି ରାଧା ଚା' କପ୍‌ଟି ଧରାଇଦେଲାବେଳେ କୃଷ୍ଣ ଆଙ୍ଗୁଠିରେ ଆଙ୍ଗୁଠି ବଜାଇ ଦେଲା ।

—ଭଲ ଲାଗୁଛି ତ ।

—ହଁ, ଲାଗିବ । କାହା ଘରର ଚା' ।

—ମୁଁ ଏଣିକି ଏଇ ଚା ଖାଇବ ।

—କେଉଁଠି ? ଏଠି ନା ନିଜ ଘରେ ?

—ଏଠି କ'ଣ ତମେ ଦ୍ରୁତବେଗ ଏମିତି ଖୁସି ମନରେ ଚା' କପ ଖୁଆଇବ ?

—ନିଶ୍ଚୟ । ତେବେ ତୁମେ ବିଲୁଆ ପରି ନ ହୋଇ···

—ଆଉ କେମିତି ? କୁକୁର ପରି ?

— ହଁ । କୁକୁର ଯାହା ଭାବେ ସେଇଆ କରେ । ବିଲୁଆ ଯାହା ଭାବେ ତା'ର ଓଲଟା କରେ ।

—ମୁଁ କେମିତି ?

—ନିଜେ କ'ଣ ଜାଣ ନାହିଁ ? ତୁମର ମନ ତୁମକୁ ବିଲୁଆ କରିଛି । ସେଇ ତୁମକୁ ଡରଉଛି । ବିଲୁଆ ଡରେ । କୁକୁର ଡରେ ନାହିଁ ।

—କେମିତି ?

—ଚା' ନେଲାବେଳେ ହାତକୁ ହାତ ବଜାଇ କପ୍ ନେଇଥିଲ । ମୁଁ ସେ'କୁ କହେ ବିଲୁଆ କାମ ।

—ମୁଁ ଅତ୍ୟନ୍ତ ଲଜ୍ଜିତ । ହାତ ବାଜ ଯାଇଛି ମୁଁ ଜାଣେ ନାହିଁ ।

—ମୁଁ ଜାଣିଛି ହାତ ବାଜିଛି ବୋଲି । ଏତେ ବଡ଼ ହୋଇ କେହି କ'ଣ ଅଜାଣତରେ ହାତ ବଜାଏ ?

—ସତରେ ମୁଁ ଜାଣେ ନାହିଁ । ଆନମନା ହୋଇ କପ୍‌ଟି ଉଠାଇ ନେଇଛି ।

—ସେ କଥା ନୁହେଁ । ଇଚ୍ଛା କଲେ ସେକ୍ ହାଣ୍ଡ କରିପାରନ୍ତା ହାତକୁ ଥାପୁଡ଼ାଇ ପାରନ୍ତ । କିନ୍ତୁ ଚୋର ପବନ ପରି ଜାଣ ନ ଜାଣ ହୋଇ ଛୁଇଁବାର ମାନେ ନାହିଁ ।

ବଡର କୃଷ୍ଣ ଦବଗଲେଣି । ଏଇ ସ୍ତ୍ରୀଲୋକମାନେ ଲାଜ ସଙ୍କୋଚର ଧାର ଧାରୁନାହାନ୍ତି । ଚା' ପିଆଳ ତଳେ ହାତ ଟିକିଏ ବାଜିଯିବାରୁ ସେ ଗୋଟାଏ ଅଧ୍ୟାୟ ଆରମ୍ଭ କରିଦେଲେଣି ।

—କ'ଣ ଶୁଣ୍ଡ଼ାଏ ଭାବୁଛ ? ମୋ ବନ୍ଧୁଘରେ ?

—ନା । ଭଲ ଶିକ୍ଷା ପଦେ ପାଇଲ ନଜର ବେଢ୍ଭସିଆର ପାଇଁ ।

—ଠିକ୍ । ପୂରା ଠିକ୍ କଥା । ଏଇ ସଂସାରଟା ସତ୍ । ସେଥିରେ ଅସତ୍ କଥା ସାଙ୍ଗେ ସାଙ୍ଗେ ଭାସି ଉଠେ ।

—କାହାର ହାତ କେହ ଛୁଇଁ ଦେବା ପାପ ନୁହେଁ । ଲୋଭ ଲୁବ୍ଧରେ ଛୁଇଁବା ପାପ । ଅଜାଣ୍ତରେ ଛୁଇଁବା ପାପ ନୁହେଁ ।

—ଛାଡ଼ । ତୁମେ ଜାଣ୍ତରେ ମୋର ହାତକୁ ଛୁଇଁପାରବ ?

—ମାନେ ?

—କହୁଛ ପରା ଅଜାଣ୍ତରେ ଛୁଇଁ ଦେଇଛ । ହେଇ ନଅ ଏଇ ବାଳେ ହାତଟିକୁ । ଛୁଇଁଲ ଦେଖିବା ।

କୃଷ୍ଣ ବକଳ ହୋଇ ଗୃହିଁଲ ରାଧାକୁ । ରାଧା ତାହାର ଦୁଇ ହାତକୁ ଟେବୁଲ ଉପରେ ରଖିଲେଣି । କୃଷ୍ଣ ବାଧରେ ତାହାର ନଜ ହାତ ଦୁଇଟିକୁ ଜଙ୍ଘ ଉପରେ ଥୋଇଦେଲଣି ।

—ହଉ, ଗୃ' ଖାଅ ମ । କପେ ଗୃ' ଦେଇ ମତେ କେତେ ଦ୍ୱାରରେ କାଇଲ କରୁଛ ?

—ଏଁ, କାଇଲ ନୁହେଁ । ତୁମର ମନକୁ ସଫା କରିବା ପାଇଁ ଏତକ କହିଲ ବୋଲି ମୋର ଦୋଷ ଧରିବ ନାହିଁ । ଗୃହଁ ମୋର ଆଖିକୁ ।

କୃଷ୍ଣ ଭାବିଲଣି ପଳେଇବାକୁ ।—ରାଧା କ'ଣ ଗିରଫ କରିବାକୁ ବାହାରିଲଣି ? କ'ଣ ତାହାର ମତଲବ୍ ? ଇସ୍, ଗୃ' କପ୍‌ଟାକୁ ତାହା ହାତରୁ ନ ନେଇଥିଲେ ବେଟି ପଦେ ବି କହିପାରନ୍ତା ନାହିଁ ।

—କ'ଣ ବସି ବସି ବର୍କ୍ତେ ଲାଗିଲଣି । ଯିବ କି ?

—ହଁ, ଟିକଏ କାମ ଥିଲା ।

—ହାତରେ କାମ ରଖି କେବେହେଲେ କାହାର ପାଖକୁ ଯିବ ନାହିଁ ।···ଅନ୍ତତଃ ମୋ ପାଖକୁ ଆସିବ ନାହିଁ ।···କି କାମ ?

—ଔଷଧ ?

—କାହା ପାଇଁ ?

—ଘରେ ଦରକାର ?

—କାହା ଦେହ ଖରାପ ?

—ଏମିତି ?

—କାହାର ? ଭଉଣୀ, ମାଉଷୀ, ମାଆ ନା ଆଉ କିଏ ?

—ବାପାଙ୍କର ।

—କ'ଣ ହୋଇଚି ?

—ଜଣା ନାହିଁ । ଡାକ୍ତର ଜାଣିପାରୁନାହାନ୍ତି ।

—ଭଲ ଡାକ୍ତରଙ୍କୁ ପଚାରୁନାହିଁ ?

—ଯିଏ ରୋଗ ଚିହ୍ନି ନ ପାରେ ସେ ହେଲା ଡାକ୍ତର । ଯିଏ ଚିହ୍ନେ, ସେ ହେଲେ ଈଶ୍ୱର ।

—ଏଇଟା ମୋ ଠିକ୍ କଥା । ଈଶ୍ୱର ଚିହ୍ନନ୍ତି ରୋଗୀକୁ—ଆଉ ରୋଗକୁ । ଚିହ୍ନି ଔଷଧ ଦିଅନ୍ତି । ଡାକ୍ତର ଚିହ୍ନେ ନିଜର ପାଠକୁ ଆଉ ଧନ୍ଦାକୁ ।

—ପ୍ରେସକ୍ରିପସନ୍ ଆଣିବ । ତା'ପରେ ଯାଇ ଔଷଧ ।

—କିଏ ତାଙ୍କର ସେବା କରୁଛି ?

—ସମସ୍ତେ ମିଳିମିଶି ।

—ସେ କାହାକୁ ଖୋଜୁଛନ୍ତି ? ତୁମକୁ ବୋଧହୁଏ...?

—ନା, ମତେ ବାପା କେବେ ହେଲେ ଖୋଜନ୍ତି ନାହିଁ । ସେ ଅନେକ ଦିନରୁ ଜାଣିଗଲେଣି ଯେ ମୋ' ହାତରେ କିଛି ହବ ନାହିଁ ।

—କାହିଁକି ?

—ତାଙ୍କ କଥା ଶୁଣିଲି ନାହିଁ । ଚାକିରି କଲି ନାହିଁ । ଅଡ୍ଡାରେ ନିଜେ ପଶିଲି । ତାଙ୍କର ଅର୍ଜନକୁ ଖାଇଲି ।

—ଠିକ୍ କଥା ସେ କହୁଛନ୍ତି । ଯେଉଁମାନେ ନିଜର ମାପ ଓଜନ ବୁଝିନପାରନ୍ତି ସେହିମାନେ ଓଲୁ । ତଥାପି ସେ ଭଲ ଲୋକ ବୋଲି, ତୁମକୁ ଖାଇବାକୁ ଦେଇ-ଚଳାଉଛନ୍ତି ।

କୃଷ୍ଣ ପୁଣି ମନ ମାରିଦେଲା ।

ହସି ରାଧା କହିଲା—ମୋର ହାତ ଖୋଲେଇ ହେଲାଣି । ଯାଅ... ବାପାଙ୍କ କଥା ବୁଝ । ବହୁତ ସମୟ ନଷ୍ଟ ହେଲାଣି ।

କୃଷ୍ଣ ରହିଁ ରହିଲା ।

—କ'ଣ ଦେଖୁଛ ? ଏଇ ସଂସାରଟା ହେଉଛି ଈଶ୍ୱରଙ୍କର ମାୟାର ଖେଳ । ଗୋଟାଏ ପାଖରେ ବାପାଙ୍କ କଥା —ଆଉ ପାଖରେ ରାଧାର ଏଣ୍ଡୁଡେଣ୍ଡୁ କଥା ।

—ଦେଖିବ କ'ଣ ? କିଛି ଦେଖିପାରୁ ନାହିଁ ।

—ଆଖି ଦେଖି ନ ପାରିଲେ ମନ ସ୍ଥିର ହୋଇଯାଏ । ଅନ୍ଧର ମନ ସବୁବେଳେ ସ୍ଥିର । କଣାର ମନ ସବୁବେଳେ ଅସ୍ଥିର । ...ହଉ ଯାଅ...ପୁଣି ଆସିବ ।

—ହଉ । କେବେ ଆସିବ ?

—ଯେଉଁଦିନ ଯେତେବେଳେ ଯେତେଥର ଆସିବାକୁ ଇଚ୍ଛା ହବ, ଆସିବ ଆଉ ଦୁଆରେ କଡା ହଲାଇବ ।...ବାପାଙ୍କ କଥା ଆଗ ।

ଇଚ୍ଛା ନ ଥିଲେ ବ କୃଷ୍ଣ ଗୋଡ଼ କାଢ଼ିଲା । ଗୋଡ଼ ଚଳୁ ନଥାଏ । ଇସ୍—ଏତିକ ବେଳେ ବାପାଙ୍କର ଦେହ ଖରାପ ହୋଇ ନ ଥିଲେ ସେ ଏଇ ନାଟକର ରଙ୍ଗମଞ୍ଚରୁ କେବେ ଆସି ନ ଥାନ୍ତା ।

ରାଧା ଦୁଆର ପାଖରୁ ଦେଖୁଥାଏ ଯେ କୃଷ୍ଣର ଗୋଡ଼ ତରବରିଆ ନୁହେଁ ।...ତାହାହେଲେ କ'ଣ ବାପାଙ୍କ ଦେହ ସେମିତି ଖରାପ ନୁହେଁ । କୃଷ୍ଣ ଦଶ ପାହୁଣ୍ଡ ଯାଇ ବୁଲି ଚାହିଁଲା—ଅସ୍ପଷ୍ଟ ରାଧା ଠିଆ ହୋଇଛି । ସେ ମୁହଁ ବୁଲାଇଲା ଆଗକୁ ।

ଆଗରେ ରହିବା କଥା ଡାକ୍ତରଙ୍କର ଘର । କିନ୍ତୁ ଆଖି ଆଗରେ ରହିଗଲା ରାଧା ।

ବଡ଼ ଅନ୍ୟାୟ କଥା । ମଣିଷ ତାହାର ଦାୟିତ୍ୱ ଭୁଲାଇବାରେ ଏମିତି ହେଳା କଲେ ତା'କୁ କୁହାଯିବ ଅମଣିଷ ।

କିଏ ବଡ଼ ? —ବାପା ନା ରାଧା ?

ବାପା ନିଶ୍ଚିତରେ ବଡ଼ । ସଂସାରକୁ ଆଣିଥିଲେ । ପୁଅର ଖାମଖିଆଲ ମର୍ଜିର ହେପାଜତ କରୁଛନ୍ତି । କ'ଣ ବା ଉପାୟ ଅଛି ତାଙ୍କର ?

ମନ ଏମିତି ଦୁର୍ଦ୍ଦାନ୍ତ । ସେ ଭଲ ମଣିଷକୁ ଚୋର କରି ଛାଡ଼ିଦିଏ । ଗାଳି କେଇ ପଦ ଶୁଣିଲା ପରେ ସେ ଆସି ପଚାରିଲାଣି—କହୋ କୃଷ୍ଣ, ବଡ଼ କିଏ ? ବାପା ନା ରାଧା ?

କିଏ ଏ ସବୁର ଠିକ୍ ଠିକ୍ ଜବାବ ଦେବ ? ମନ କେତେବେଳେ କ'ଣ ଧରିନଉଛି—କିଏ ତାହାର କୈଫିୟତ୍ ଦେବ ? ନୂଆ ଲୋକଙ୍କର କଥା କେମିତି ପୁରୁଣା ଲୋକଙ୍କର ଗୁରୁତ୍ୱ କମେଇ ଦେଇପାରୁଛି—ତାହାର ତର୍ଜମା କେବଳ ଈଶ୍ୱର ହିଁ କରିବେ । ମଣିଷ ଏଥିକୁ ଅଭାଜନ ।

ଗୋଟିଏ ଗୋଟିଏ ହେଇ ଚାଲିଥାଏ ଡାକ୍ତର ଦୁଆରକୁ । ବାପାଙ୍କର ଦେହର ଖବର ଡାକ୍ତରଙ୍କୁ ଦେବାକୁ ହେବ । ଏଣେ ନିଜର ମନଟା ବେମାରିଆ ହେଇଗଲାଣି । ସେଠି ଆସିଗଲାଣି ଆଉ ଗୋଟିଏ ବେମାରି—ସେଇଟା ହେଲା ରାଧାର ଟାଇଁଟାଇଁଆ କଥାଗୁଡ଼ାକ ।

ତାହାର କ'ଣ ମୋଲାୟମ ଭାବ ନାହିଁ ? ରାଧାର କ'ଣ ଲାଜ ନାହିଁ ? ସେ କ'ଣ କୃଷ୍ଣକୁ ଡରେ ନାହିଁ ? କୃଷ୍ଣ ରାଧାର ହାତକୁ ଛୁଇଁଲେ କ'ଣ ସୁବିଧା ହେବ ରାଧାର ?···ସେ ଯେମିତି ଥାପଡ଼ ଲଗାଇ ଦେଇଛି ସେତକର ଲେଉଟ ମାଡ଼ ଅଲବତ୍ ଚଢ଼ାଇବାକୁ ହେବ ।···ସବୁ ସ୍ତ୍ରୀ ଲୋକ ଭାରି ବାଜେ ମାର୍କା ।

ଡାକ୍ତର ବାବୁ ଘର ଭିତରେ । ମେ ଗାଧୋଇ ସାରିଲେ ପୂଜା ପାଠ କରି ପଦାକୁ ବାହାରିବେ ରୋଗୀଙ୍କ କଥା ବୁଝିବା ପାଇଁ । କଲିକତା କଟକଠାରୁ ଭଲ—ସେଠି ଏଇ 'ଡେ ଆଣ୍ଡ ନାଇଟ୍'—କାରବାର ନାହିଁ । ଯେଉଁ ଘଣ୍ଟାଏ କଲିକତା ଡାକ୍ତର ଘରକୁ ଭଡ଼ା ନେଇଛନ୍ତି ସେଥିରେ ଘଡ଼ି ଦେଖି କାମ ଖତମ୍ କରୁଛନ୍ତି । ଆଉ ସବୁ କଥା ସେମିତି ଅଛି ଭଲ ।

ବଡ଼ ବଡ଼ ସହରରେ ଡାକ୍ତର ଯେମିତି, ଓକିଲ ଯେମିତି, ମଣିଷ ବି ସେମିତି । ରାସ୍ତାରେ ହଲିହଲି ଚାଲିଲେ ନଜେ ଧକ୍କା ଖାଇ ପଡ଼ିବ । ଅବାଟରେ ଗଲେ,—ଚାଲିବା ବାଟରୁ ଓହ୍ଲାଇ ଗାଡ଼ି ମଟର ରାସ୍ତାରେ ଚାଲିବାର ସ୍ୱାଧୀନତା ଦେଖାଇଲେ—ଡାକ୍ତରଖାନା ଅବା ମଶାଣିକୁ ଯିବାକୁ ପଡ଼ିବ ।

ଏଠି କଟକରେ ରହି ମନ୍ତ୍ରୀଙ୍କୁ ଗାଳିଦବା ଛଡ଼ା ଆଉ କିଛି କମ ନାହିଁ । ସେ ଗାଁକୁ ରାସ୍ତା କରିବେ । ଗାଁରେ ମଟର ଚଳାଇବେ । ପ୍ରତ୍ୟେକ ଗାଁରେ ହସ୍ପିଟାଲ୍ ହବ । ପ୍ରତ୍ୟେକ ଗାଁରେ ସ୍କୁଲ ଓ କଲେଜ ହବ । ପ୍ରତ୍ୟେକ ଗାଁର ପ୍ରତ୍ୟେକ ଲୋକଙ୍କୁ ଚାକିରି ଦେବାକୁ ପଡ଼ିବ । ଆଉ ସେଇ ଚାକିରିଆ କାମ କରୁ ଅବା ନ କରୁ ତାକୁ ତାହାର ପେନସନ ବର୍ଷ ପାଏ ରଖି ଫାମିଲି ପେନସନ ଦବାକୁ ପଡ଼ିବ । ନ ହେଲେ ସମସ୍ତେ ସେଇ କାନ୍ଥାରିଆ ଘରର ମନ୍ତ୍ରୀକି ଗାଳିଦବୁ ।

ସ୍ଥାନୀୟ ସୁବିଧା ଅସୁବିଧା ନେଇ ପ୍ରାଣୀ । ମାଟିଥିଲେ ଜିଆ, ବିଛା ଓ କଙ୍କଡ଼ା ବାସ୍ତୁ ହେବେ । ମାଟି ନ ଥାଇ ପକ୍କା ହେଲେ ସେଠି ଏସବୁ ମିଳିବେ ନାହିଁ । ଆଉ ମାଟି ପାଦରେ ନ ଲାଗିଲେ ଦେହ ଖରାପ ହେବ ଓ ଡାକ୍ତର ପାଖକୁ ଯିବାକୁ ହବ ।

ସ୍ଥାନର ମାହାତ୍ମ୍ୟ ନେଇ ଲୋକର ମାହାତ୍ମ୍ୟ । ସେଇଠୁ ବଂଶର ମାହାତ୍ମ୍ୟ । ସେଇଠୁ ଗାଁର ମାହାତ୍ମ୍ୟ । ଆଉ ଅଞ୍ଚଳର ମାହାତ୍ମ୍ୟ ।

ଏଇ ମାହାତ୍ମ୍ୟକୁ ନଜର ନ କଲେ ତୁମକୁ ଏକଘରିଆ କରି ଦିଆହେବ । କମ୍ ସେ କମ୍ ପାଗଲ ବୋଲି ସାର୍ଟିଫିକେଟ୍ ନେବାକୁ

ପଢ଼ବ । କୃଷ୍ଣର ବାପାଙ୍କର ଡାକ୍ତରବାବୁ ମଧ୍ୟ ଏଇ ଆଞ୍ଚଳିକ ମହାତ୍ମା । ସେ ବ ସେମିତ ଘଡ଼ି ଅନୁସାରେ କାମ ନ କର, ଅଗଣାର ଖରା ଅବା ନିଜର ଖିଆଲ ବା ମରଜ ଅନୁସାରେ ଚକିତ୍ସା କରନ୍ତ । ଚକିତ୍ସାର ପ୍ରଧାନ ଉପକରଣ ହେଲ· ପ୍ରବୋଧ ଅବା ଉତ୍ସାହ ଦେବା ।

ଡାକ୍ତରଙ୍କର ପିଣ୍ଡା ବେଞ୍ଚରେ ବସି କୃଷ୍ଣ ତୁଳନା କରୁଥାଏ ଡାକ୍ତରଙ୍କର ପାସେଞ୍ଜର ଗାଡ଼ ପର ଗତ ସାଙ୍ଗରେ ରାଧାର ସୁପରଫାଷ୍ଟ ଟ୍ରେନକୁ । ବେଶି ବାଟକୁ ଅଳ୍ପ ସମୟରେ ପାର ହେବା ପାଇଁ ଦରକାର ତତ୍ପରତା ।

ରାଧା ଯାହା କହବାକୁ ଚାହୁଁଥିଲ ସେଇ ଅଳ୍ପ ସମୟରେ କହଦେଲ ।···କୃଷ୍ଣକୁ ରାଧା ଆଦର କରେ । କୃଷ୍ଣକୁ ରାଧା ଶ୍ରେଷ୍ଠ ମନେ କରେ ନାହିଁ । କୃଷ୍ଣକୁ ମାଟିରୁ ଉଠିବାକୁ ଚାହେଁ । କଲେଜର ଦୁଇ ତନ ବର୍ଷିଆ ଲମ୍ବା ପାଠକୁ ଏକ୍‌ସଟ୍ରା କ୍ଲାସରେ ଆଠ ଦଶ ଦନରେ ଖତମ୍ କଲାପର ।

ଠିକ୍ କହୁଛ । କାଳ ଅନନ୍ତ । ଏଇ ପୃଥିବୀର ଏଇ ମେରୁରୁ ସେଇ ମେରୁଯାଏ ବିସ୍ତୃତ ରହୁଛ । ଆକାଶ ଗୋଟାପଣ ରହୁଛ । ଚାରଆଡ଼େ କାଳ ଠିଆ ହୋଇଛ—ମହାସାଗର ପର ।

ସେଠି ମଣିଷଟିଏ କୂଳର ଲହଡ଼କୁ ପାଦରେ ଭାଙ୍ଗି ସେଇଠୁ ଟିକଏ ପାଣି ନେଇ ସମୁଦ୍ରକୁ ପଚ୍ଚାରିଲା ପର ମଣିଷର ସ୍ଥାନ ମଧ୍ୟ କାଳ ପାଖରେ ସେଇଆ ।

କାଳ ଅନନ୍ତ । ମଣିଷ ଜୀବନ ଅତ ସୀମିତ । ସେଥିରେ ଆହାର-ନିଦ୍ରା-ମୈଥୁନ ଚନ୍ତା ଆଦ କାଟି ବାହାର କରଦେଲେ ଜୀବନ ମଧ୍ୟ ଅତ ସୀମିତ । ଚାରଆଡ଼ୁ ଆଣି ଗୋଟେଇଲେ ଚାର ଛଅ ନୋକେଇ ଅବା ଚାର ଛଅ ହଜାର ଟଙ୍କା ଅବା ଚାର ଛଅ ପିଲା ଅବା ଚାର ଛଅ ପ୍ରେମିକ-ପ୍ରେମିକା ।

ଇଚ୍ଛା କଲେ ଜଣେ ତତ୍ପର ହୋଇ କାମ ସାରଦବ ନ ହେଲେ ମାଛିକନିଆ ବସି ଦେଢ଼ ଘଣ୍ଟାରେ ବଡ଼ ପୋଡ଼, ଶୁଖୁଆ ଭଜା ଅବା

ଗଡ କରି କରି ଖୋରାକ ଖାଇଲା ପରି ଦିନକରି କାମକୁ ଶହେ ହଜାର ଦିନ କରିପାରିବ । ଏଣେ ଭାବୁଥିବ ଯେ ସେ ଭାରି ମଉଜୀ ଲୋକ ।

ଘଣ୍ଟାଏ ଲାଗି କରି ଖାଏ । ଆଠ ଘଣ୍ଟା ଲଗାଇ ଶୁଏ । ଘଣ୍ଟାଏ ନେଇ ଗାଧୁଆଏ । ଆଉ ଜଣକୁ ଗାଳି ଦବାକୁ ହେଲେ ଦିନକୁ ଅଧ ଅଧ ଘଣ୍ଟା କରି ଦି' ଚାରି ବର୍ଷ ବି ଗାଳି ଦେଇପାରେ ।

କିନ୍ତୁ ଏଣେ ମନରେ ଠିକ୍ କରିଥାଏ ଯେ ମଲାବେଳକୁ ଯେମିତି ହେଉ ସେ କୃଷ୍ଣ, ହରି, ରାମ ଗୋଟାଏ କହିଦବ ଅବା ଶୁଣିଦବ । ଫଳ ସମାନ । ମଣିଗର ଦେହର ଦୁଆର ଛ—ମୁହଁ ହାରିଲେ ଆଖି ଠାକୁର ଫଟୋ ଦେଖିନବ । ସେଠି ହାରିଲେ କିଏ ଜଣେ କାନରେ ହରିନାମ ପକାଇଦବ । ତେବେ ସେ ମୁକ୍ତି ପାଇ ସ୍ୱର୍ଗକୁ ଯିବ ।

ଯଦି ସ୍ୱର୍ଗକୁ ନ ଯିବ ତାହାହେଲେ ସେ ଏଇ ମାଟିକୁ ଆସିଲା କାହିଁକି ? ସେ କ'ଣ ଜିଆ କି ଜନ୍ଦା ? କେବେ ନୁହେଁ । ସେ ମଣିଷ । ସେଇ ହେଉଛି ଦେବତାଙ୍କର ଅଂଶ—ଠିକ ଦେବତା । ସେ ଅଲବତ୍ ଯିବ ସ୍ୱର୍ଗକୁ । ନ ହେଲେ ସେ ଠାକୁରଙ୍କୁ ସମ୍ଝୁଥିବ ଯେ ତାହା ପ୍ରତି ଅନ୍ୟାୟ ହେଇଗଲା ।

ସ୍ୱର୍ଗକୁ ଯିବାର ଫାଟକ ହେଉଛି ମରଣ । ମରଣର ପାହାଚ ହେଉଛି ବେମାରି । ଏଇ ବେମାରିର ଉପଚାର ରହିଛି ଡାକ୍ତର ପାଖରେ ।

ବାପା ବୋଧହୁଏ ବଞ୍ଚିବେ ନାହିଁ । ସେ ଔଷଧ ଛାଡ଼ିଦେଲେଣି । ଡାକ୍ତର ବି ତାଙ୍କୁ ମାଉଁସ ସରୁଆ ଛଡ଼ାଇ ଦେଲାଣି । ଆଗ ଦିନ କହିବା ଆଗରୁ ବଡ଼ି ପଡ଼ିପକାଇ କୃଷ୍ଣଙ୍କୁ ପଡ଼ାଇଦେଲା···ଯାହା ଜଣାପଡ଼ୁଛି ଯେ ଏଇ ବେମାରି ଭଲ ହବ ନାହିଁ ।

କୃଷ୍ଣ କହିଲା—କ'ଣ ତେବେ ମରିଯିବେ ? ମରିବାକୁ କେଇ ଦିନ ଲାଗିବ ?

—ଠିକ୍ କହିହବ ନାହିଁ । କିଏ କେତେ ଦିନ ଲଢ଼ିବ ବା ଲଢ଼ିପାରିବ, ସେ କଥା ଆମ ପାଠରେ ଲେଖା ନାହିଁ । ସେ କଥା

ସାଧକମାନେ କହିବେ । ତେବେ ବେମାରକୁ ଔଷଧ କାହିଁକି କରୁନାହିଁ । ଆଜି ଯେଉଁ ଔଷଧ ଅଛି ସିଏ ମିଳିବ ଫୁଟପାଥରେ ସୁଇଜରଲାଣ୍ଡରେ । ତାକୁ ଆଣିବା କେମିତି ?

କହୁଥିଲେ ଯେ ଆମର ବଳିବାର ବଳ ଭାଙ୍ଗି ସେ ଦିଗକୁ ମନ ଦେଲେ ହୁଏ ତ ବାପା କେଉଦିନ ଠାକଟିବେ । ତେବେ ସବୁ ଦିନକୁ ନୁହଁ । ତେଣୁ ସେ ଦିଗକୁ ଦୃଷ୍ଟି ନ ପକାଇ ତାଙ୍କର ଧର୍ମ ଭାବ ବଢ଼ାଇବା ଉଚିତ୍ ।

କୃଷ୍ଣ ପଚାରୁଥିଲି ଯେ ଜୀବନର ଷାଠିଏ ସତୁରି ବର୍ଷ ଗୋଟାଏ ପ୍ରକାରରେ ନିଜକୁ କର୍ତ୍ତା ଭାବି ନିଜର ନିୟମରେ ସବୁ କାମ କଲା ପରେ ଶେଷ ଷାଠିଏ ସତୁରି ଘଣ୍ଟା ପରମାୟୁ ମଧ୍ୟରେ ଈଶ୍ୱରଙ୍କର ପାଖରେ ପହଞ୍ଚି ଲାଙ୍ଗୁଡ଼ ହଲାଇବା ସମ୍ଭବ କି ?

ଡାକ୍ତର ନିଜେ ଜଣେ ଶ୍ରେଷ୍ଠକାଠିଆ ସାଧକ । କାରଣ ସେ ପ୍ରତିଦିନ ସହସ୍ର ନାମ ପଢ଼ି ଠାକୁରଙ୍କୁ ତାରିଫ୍ କରନ୍ତି ।

ଠାକୁରମାନେ ମଧ୍ୟ ଭାରି ଚତୁର । ଅନେକ ଶ୍ରେଷ୍ଠ ଶ୍ରେଷ୍ଠ ନିୟମ ଚଳାଇ ଦେଇଛନ୍ତି । ଖାଇଲାବେଳେ, ଶୋଇଲାବେଳେ, ଝାଡ଼ା ଗଲାବେଳେ ଓ ପରୀକ୍ଷା କରିବା ଆଗରୁ ତାଙ୍କର ନାମ ନେବାକୁ ହେବ ।

ଏଇଟା ଭାରି ସୁବିଧା କାମ ବୋଲି କେତେକ ଲୋକ ହାଇ ମାରିଲାବେଳେ, ଛିଙ୍କିଲାବେଳେ, କାଶିଲାବେଳେ ଆଉ କେହି କେହି ଚୋରି, ଜାଲିଆତି, ଧପ୍ପାବାଜି କରିବାକୁ ବାହାରିଲାବେଳେ ଈଶ୍ୱରଙ୍କର ନାମ ନିଅନ୍ତି ।

କେବଳ ଗୋଟିଏ ଆଇଟେମ ପାଇଁ କେହି ଈଶ୍ୱରଙ୍କର ନାମ ନିଅନ୍ତି ନାହିଁ । ସେଇଟା ହେଲା ପ୍ରୀତି ଅବା ରତି ଅବା ବଳତ୍କାର କଲାବେଳେ ।

ଡାକ୍ତରମାନେ ବି ଔଷଧ ଦେଲାବେଳେ ଠାକୁରଙ୍କର ନାମ ନିଅନ୍ତି । ନେଉଥିଲେ ପୁରୀର ରାଜବୈଦ୍ୟ ମାଗୁଣୀ ବ୍ରହ୍ମା । ନେଉଛନ୍ତି

କଟକର ବରିଷ୍ଠ ହୋମିଓପାଥିକ ଡାକ୍ତର ଶ୍ରୀ ସୁରେନ୍ଦ୍ର ମୋହନ ଦାସ ; ଆଉ ଏମିତି ଅନେକ ଲୋକ ।

ଜୁଆ ଖେଳିଲାବେଳେ ଠାକୁର ନିଶ୍ଚୟ ମନେପଡ଼ିବେ । ପରୀକ୍ଷା-ବେଳେ ସେ ଅବଶ୍ୟ ରହିବେ । ଗୁରୁକର ବାକର ପ୍ରତିଯୋଗିତାରେ ସେ ନିଶ୍ଚିତରେ ଜଣେ ହୋଇ ରହିବେ ।

ମଣିଷ ଏମିତି ଠାକୁରଙ୍କୁ ନେଇ ଜୁଆ ଖେଳୁଛି । ଜୀବନଟା ହେଲା ଜୁଆ । ମଣିଷ ଉପରେ ବାଜି ମାରି ଠାକୁର ଖେଳନ୍ତି । ଜନ୍ମରୁ ତାହାର ଉପରେ ଲଲାଟଲେଖନ କରି ଦେଇ ଠାକୁର ପାର ।

ମଣିଷ ତେଣିକି ଧନ ରତି ସା'ର ଜୀବନ ଠାକୁରଙ୍କୁ ଭଜୁଥିବ । ଯିଏ ଦୁର୍ବଳ—ସେଇ ଠାକୁରଙ୍କୁ ଭଜିବ । ଆଉ ଯେ ବଡ଼, ଯେ ପରାକ୍ରମୀ—ତାକୁ ଠାକୁର ଭଜିବେ । ଏଇଟା ହେଲା ଠାକୁରଙ୍କର ଜୁଆ ଖେଳ । ସେଥିରେ ମଣିଷ ହେଲା ଅତି ଶ୍ରେଷ୍ଠ ଶ୍ରେଷ୍ଠ ଗୋଟି ବା ସାର ।

ଡାକ୍ତରଙ୍କ ବେଞ୍ଚରେ ଅପେକ୍ଷା କରିବା କ'ଣ ଗୋଟାଏ ଦରକାରୀ କାମ ନା ବେକାରିଆ କାମ ? ଯଦି ବାପାଙ୍କ ପାଇଁ ପ୍ରେସକ୍ରିପ-ସନ୍ ଆଣିବା ଦରକାରୀ କାମ, ତାହାହେଲେ କୃଷ୍ଣ ସେତେବେଳେ ବେକାର ନୁହେଁ । କୃଷ୍ଣ ଭୁଲ କଥା ରାଧାକୁ କହିଦେଇଛି—କୃଷ୍ଣ ପ୍ରକୃତରେ ବେକାର ନୁହେଁ ।

ଏତକ ଶୀଘ୍ର ଯାଇ ସଂଶୋଧନ ନ କଲେ ସେ ଗୁଡ଼ାଏ ଭୁଲ କଥା ଭାବିନେବ । ଆଇ. ଏ. ଏସ୍. ପରୀକ୍ଷାରେ ଉପଯୁକ୍ତ ନ ହୋଇ ଘରକୁ ଫେରିଆସି ବସିଗଲେ ବ· ଡ଼· ଓ· ଅଫିସରେ ପିଅନ ମଧ୍ୟ ଧରିନିଏ ଯେ ବେକାର ହୋଇଗଲ—ବେକାର ଜଣେ ବଢ଼ିଲା । ଇହ ଜଗତ ଉଚ୍ଛନ୍ନ ଏଣିକି ହୋଇଯିବ ।

ରାଧା ବି ଯଦି ସାବତ୍ କରିନେବ ଯେ କୃଷ୍ଣ ଗୋଟାଏ ବଦ୍ଧମୂଳ ବେକାର; ତାହାହେଲେ କଥା ସରିଲା । ତେଣିକି ସେ ନିଜକୁ ଅଧିକରୁ ଅଧିକ କାମିକା ବୋଲି ଭାବିବ ଆଉ କୃଷ୍ଣକୁ ସେମିତି ପୁରୁଣା ବେକାର କଙ୍କଡ଼ା ବୋଲି ମନେ କରିବ ।

ପୁରୁଷମାନେ ଗୋଟିଏ କଥାକୁ ରାଜି ହୁଅନ୍ତି ନାହିଁ । ସେଇଟା ହେଲା ସ୍ତ୍ରୀମାନଙ୍କର ପାଖରେ ନିଜର ମୂଲ୍ୟକୁ କମାଇବା ଅବା ଉଚିତ୍ ମୂଲ୍ୟରୁ ଅଧିକ କରି ନ ଜଣାଇବା ।

କୋର୍ଟ କଚେରୀରେ ପ୍ରତିଦିନ କେତେ ଲୋକ ଆସି ବାହାଘରକୁ ପେଷି ଗୁଣ୍ଡ କରିଦେବାକୁ ତିଆର ହୋଇ । ବାହାଘର ଠିକ୍ ଠିକ୍ ହେଉଛି । ଦିଆନିଆ ହେଉଛି । ଚଉଠି ଆଠମଙ୍ଗଳା ଆଦି ହୋଇଯାଉଛି । କାହାରି କାହାରି ଗୋଟିଏ ଅଧେ କୋଳକୁ ଆସିଛନ୍ତି । ସେଇଠୁ ହେଲା କଚେରୀ ବାରଣ୍ଡା ।

—କ'ଣ ଅଡ଼ୁଆ ଏମିତି ହୋଇଗଲା ?

—ଆପଣ ଶୁଣି ସାରି ମଧ୍ୟ ବୁଝି ପାରୁ ନାହାନ୍ତି । ଆମେ ଏକାଠି ରହିପାରିବୁ ନାହିଁ ।

—କ'ଣ ପାଇଁ ?

—ଆମେ ମଫସଲ ଝିଅ । ସହରରେ ଚଳିବାକୁ ଅଡ଼ୁଆ ହେଉଛି ।

—କି ଅଡ଼ୁଆ ?

—ସହର ଗୁଡ଼ାକ କାନ୍ଥାରିଆ ଜାଗା । ଏଠି କଥା ବେଶି କାମ କମ୍ । କାମକୁ ମୂଲ କମ୍ । ମୂଲକୁ ପେଟ ବଡ଼ ।

—ହଉ, ହାକିମ ବୁଝିବେ । ସେ ମିଳାମିଶା କରାଇଦେବେ ।

ସେ ଦିନ ହାକିମ ବି ଟିକିଏ ଯତ୍ନରେ ଫିରେଇ କାଟି ଇସ୍ତ୍ରୀ ଦିଆ ପୋଷାକ ପିନ୍ଧି ଆସିଲେ ପରେ ଟେବୁଲ ଚଉକୀରୁ ଧୂଳି ଝଡ଼େଇ ଦେଇଥାନ୍ତି । ସେ ଦିନ ଇଜଲାସ ହେବ ଚାମ୍ବର ଅବା ଖାସକାମରାରେ । ସେ ସ୍ୱାମୀ-ସ୍ତ୍ରୀ ଭିତରେ ମିଳାମିଶା କରାଇବେ ।

ଏଇଟା ଗୋଟାଏ ଲାଜ ସରମର କଥା । ମିଆଁ ବିବିଙ୍କର ଘରୋଇ କଳିକୁ ହାକିମମାନେ ସଜାଡ଼ିବା ହେଲା ଦେଶର ଆଇନ୍ । ବିଚାରୀ ହାକିମ୍ ଘରେ ଗାଳି ଖାଇ ଖାଇ ବେହାଲ୍ । ଗୃହକର୍ମ କରୁଛି

ବୋଲି ସେ ମିଳାମିଶା କରାଇବ । ମିଳାମିଶା ଫେଲ୍ ମାରିଲେ ସେ ବିଚାର କରି ଅଡ଼ର ଲେଖିବ ।

ପୁଅ – ଝିଅ । ପୁଅ ଓ ଝିଅଙ୍କର ମୁରବୀ । ପୁଅ ଓ ଝିଅଙ୍କର ଖାସ ବନ୍ଧୁ । ପକାଅ ସବୁପାକ ଚଉକା । ନଅଣ୍ଟ ହେଲେ ହାକିମ ଅଧିକା ଲୋକଙ୍କୁ ଚାଗଦା କରନ୍ତି ପଦାକୁ ଯିବା ପାଇଁ ।

ଯିବ କିଏ ? ହକ ହକଧିର୍ ଖିଲାପ ପାଇଁ ସେମାନେ କଚେରୀ ଦାଣ୍ଡକୁ ଆସିଗଲେଣି । ଗାଁ ଦାଣ୍ଡରୁ କଚେରୀ ଦାଣ୍ଡ କେଜାଣି କେତେ ଦୂର ।

ଟଙ୍କା ପଇସା, ପଦ ପଦବୀ ଅଡ଼ୁଆ ନୁହେଁ । ଅଡ଼ୁଆ ହେଉଛି ବଶ୍ୟତା ସ୍ୱୀକାର କରାଇବା । ସେଇଥି କାଇଦାରେ ସହର ମଫସଲ ସମାନ । ଖାଲି ଚିକିଏ ବଦଳ ମୁହଁ କରି ନିଜକୁ ପାଣି ଛଡ଼େଇ କୋର୍ଟରେ ଦରଖାସ୍ତ ଦବା କଥା ।

ସେଠି କବିତା ନାହିଁ । କାବ୍ୟ ନାହିଁ ।

ସେଠି ଅଛି ନାଟକ—କରୁଣ ରସ ଓ ବୀଭତ୍ସ ରସର ନାଟକ ।

କେବେ ଏଇ ସମସ୍ୟା ନ ଥିଲା । ନୃସିଂହ ପୁରାଣରେ ଅଛି । ଓଡ଼ିଆ ଭାଷାକୋଷକୁ ପାଇଛି ।

ତାହାର ମୋହର ବନ୍ଧ ସଂଯୋଗ ହୋଇଲେ,
ବଶ ହୋଇ ଗୋଡ଼ାଇବ ମୋହର ଭୁଲେ ।

ଏବେ କୃଷ୍ଣ ଓ ରାଧା ବଚନକାରେ ବଚନ କଥା ଉଠୁଛି । କିନ୍ତୁ ନୃସିଂହ ପୁରାଣ କଥା ଉଠୁ ନାହିଁ । ଚଳନ୍ତି ଯୁଗରେ ଉଭୟ ପକ୍ଷର ବୟସ, ପାଠ ପଢ଼ା, ଗୃହକର୍ମ ବା ଦରମା, ଉଚ୍ଚତା ଓ ଓଜନ କଥା ଉଠୁଛି କିନ୍ତୁ ମଣିଷର ଦେହ କଥା ଉଠୁ ନାହିଁ ।

ଦେହକୁ ବାଦ ଦେଇ ମନ ଓ ମନର ପରାକ୍ରମ କଥା ଉଠୁଛି । ବୁଦ୍ଧିର ଦଉଡ଼ ମପାଯାଉଛି । କିନ୍ତୁ ଦେହ କଥା ଉଠୁନାହିଁ ।

ବୃକକ୍ ପାଇଁ ଦେଖାଯାଉଁ ଈଶ୍ବରଭକ୍ତରେ ବାପାର ବୃକକ୍। ପ୍ରାର୍ଥୀର ପୋଷାକପତ୍ର ଆଜ କହିବାର ଠାଣିକୁ ମପାଯାଉଛି। କିନ୍ତୁ ମୁଣ୍ଡ ମସ୍ତିଷ୍କର ମସଲା କଥା କେହି ଠଉରାଇବାକୁ ଚାହୁଁ ନାହାନ୍ତି।

ଫଳରେ ପିଅନର ପୁଅ ପିଅନ, ଟାଇପିଷ୍ଟର ପୁଅ ଟାଇପିଷ୍ଟ, ଅମଲାର ପୁଅ ଅମଲା ହୋଇଯିବା ଅତ୍ୟନ୍ତ ସମ୍ଭବ ହେଉଛି। ସେତେବେଳେ ମଫସଲିଆ ସହରିଆ କଥାକୁ ସମ୍ଭବ କରାହେଉଛି।

କୃଷ୍ଣ ଓ ରାଧା ପରସ୍ପରକୁ ଦେଖୁଛନ୍ତି—ମନରେ ଓ ବୁଦ୍ଧିରେ। ଦେହ କଥା ସେଠି ଉଠୁ ନାହିଁ। କିଏ କାହାକୁ କେତେ ଭୁଆଁ ବୁଲାଇବ ସେତିକ ହେଉଛି ପରଖର ପରୀକ୍ଷା।

ଡାକ୍ତରଙ୍କ ଅଫିସରେ କୃଷ୍ଣର ସମସ୍ୟା ହେଉଛି ମନର ସମସ୍ୟା—ଦେହର ସମସ୍ୟା ନୁହେଁ, ବାପ ମାଆ ଅବା ମୁରବି ଆସିଲେ ସେଇ କଥା ପଚାରିବେ—ଏଇ ଝିଅକୁ ଏଇ ପୁଅ ଚଳାଇ ପାରିବ କି ନାହିଁ ?

ସେଥିରେ ଝିଅ ଯଦି ଆଗୁଆ ହୋଇ କହିଦେଲା ଯେ ସେ ଚଳାଇ ନବ ପୁଅକୁ। ତେବେ ହୋଇଯିବ ଗୋଳମାଳ।

ଏଇ ଦୁନିଆଁ ଭ୍ରଷ୍ଟ ହୋଇଯିବ। ଏଇ ଝିଅମାନେ ବେମହଣ୍ଡ ହୋଇଯିବେ। ଏଇ ପୁଅକୁ ନେଇ ସେ ଝିଅ ରଖିବ ବୋଲି କହୁଛନ୍ତି ଇସାରାରେ। ଏମିତି ପ୍ରସଙ୍ଗରେ ଆମେ ଧାର ଧରିବୁ ନାହିଁ।

ସେଥିପାଇଁ ପାଚିଲା ଅବା ବଳିଲା ପୁଅ ଝିଅ ଦଳରେ ମୁରବୀମାନଙ୍କୁ ଆଉଟ୍ କରି ଦିଆଯାଉଛି। ଆଉ ଝିଅ ପୁଅ ମିଶି ଏମିତି ରାଧା ଓ କୃଷ୍ଣ ପରି ଜୀବନର ସଉଦାକୁ ମୂଲଚାଲ କରୁଛନ୍ତି।

ମଫସଲିଆ ଗଣ୍ଡିଆ ଆସି ସହରର ଛକ ଉପରେ ଛନପଡିଆ ଦଳ ପାଖରେ ବୁଦ୍ଧିକୁ ମପେଇଲା ପରି ସେମାନେ ବି ଚାଲିଛନ୍ତି।

ବାପାଙ୍କର ଦେହ ଖରାପ। କୃଷ୍ଣ ବାପାଙ୍କ କଥା ବୁଝିସାରିଛି। ସେ ଆଉ ଭଲ ହେବେ ନାହିଁ ବୋଲି ଡାକ୍ତର କହିଦେଇଛନ୍ତି। ତାହାହେଲେ ସେ ଆଉ କ'ଣ କରିବ ?

ଭାବ ଭାବ ଠିକ୍ କଲା ଯେ ଦେହ ଥିଲେ ରୋଗ ହେବ । ଆଜି ରୋଗ ଭଲ ନ ହେଲେ ଦେହ ମଧ୍ୟ ଝିଙ୍ଗିଯିବ । ବାପା ନ ବଞ୍ଚିଲେ ସେ ଆଉ କ'ଣ କରିବ ? ବାପାଙ୍କର ଉଚିତ୍ ଥିଲା ଘର ଦୁଆର ନ କରି ନିଜର ଚିକିତ୍ସା ପାଇଁ ସେ ସବୁ ରଖିଥାନ୍ତେ ।

ରଖିଲେ ନାହିଁ । କାରଣ ସେଠି ବୁଦ୍ଧି ବଣା ହେଲା । ତାଙ୍କର ମନରେ ନିଜର ବର୍ତ୍ତମାନ ଓ ନିଜର ଭବିଷ୍ୟତ ବୁଝାମଣା କରିପାରିଲେ ନାହିଁ । କୁଳାଙ୍ଗାର ପୁଅ ବସି ବସି ହିସାବ ଯୋଡ଼ୁଛି—ବାପାଙ୍କର ସାଂଘାତିକ ବେମାରି ସାଙ୍ଗରେ ରାଧା କଥା ଭାବୁଛି ।

ସମସ୍ତଙ୍କର ଜୀବନରେ ଏମିତି କର୍ତ୍ତବ୍ୟର ପ୍ରଶ୍ନ ଆସେ—କିଏ ଆଗ ଓ କିଏ ପଛ ଠିକଣା କରି ପାରନ୍ତି ନାହିଁ । ନୂଆ ପ୍ରେମିକା ବଡ଼ କି ପୁରୁଣା ବାପା ବଡ଼—ଠିକଣା କରି ହୁଏ ନାହିଁ । ଏଇଟା ହେଲା ଦେହ ଓ ମନ ଓ ବୁଦ୍ଧିର ଅଣ୍ଟୁଣ୍ଡା ପ୍ରଶ୍ନ ।

ଏଇଟା ମଧ୍ୟ ହେଲା ଅତୀତ, ବର୍ତ୍ତମାନ ଓ ଭବିଷ୍ୟତର ଟଣା-ଓଟରାର ପ୍ରଶ୍ନ । ଏଇଟା ବି ସେମିତି ହେଉଛି କର୍ତ୍ତବ୍ୟ ଓ ଖିଆଲର ଦ୍ୱନ୍ଦ୍ୱ । ସେମାନେ ଆଙ୍ଗୁଠି ଦେଖାଇ କହି ଅଛନ୍ତି ଯେ ନାରୀ ହେଉଛି ମାୟା ।

ମାୟା ହେଉଛି ଅସତ୍ । କର୍ତ୍ତବ୍ୟ ହେଉଛି ସତ୍ । ଅସତ୍ ମାୟା ସତ୍ କର୍ତ୍ତବ୍ୟକୁ ବାଣ୍ଟବଣା କରି ଘୁଡ଼ାଏ । ସେଇତକ ହେଉଛି ସଂସାର ।

କେହି ଯଦି ମିଛ ମାୟା ପଛରେ ଧାଇଁବାକୁ ଅରାଜି ହୁଅନ୍ତା ତାହାହେଲେ ସଂସାରଟା ଠିକ୍ ଚାଲନ୍ତା । କିନ୍ତୁ ସେ ଲୋକକୁ କୁହାହୁଅନ୍ତା ଓଲା, ଜଡ଼ା ଓ ଗୋବା ।

ଯିଏ ଯାହା ଭାବନ୍ତୁ ଅବା କୁହନ୍ତୁ କୃଷ୍ଣ ଫେରିବା କଥା ରାଧା ଘର ଡେଇ । ସେଇବାଟେ ସେ ଆସିଥିଲେ ।

ବେଶି ବେଳ ହେଇ ନାହିଁ । ଦୁଆର ମେଲା ଅଛି । କୃଷ୍ଣ ଯାଇ ହାଜର ।

—କ'ଣ ହେଲା ? ଡାକ୍ତର କ'ଣ କହିଲେ ?

—କହିଲେ ବାପା ଭଲ ହେବେ ନାହିଁ ।

—ସେ ଜାଣିଲେ କେମିତି ?

—ତାଙ୍କ ପାଖରେ ଆଉ ଔଷଧ ନାହିଁ ।

—ଭଲ ଡାକ୍ତର ବୁଝିବା ।

—ଟଙ୍କା କାହିଁ ? ଭଲ ଜିନିଷର ଦାମ୍ ଟିକିଏ ବେଶି ।

—ମୁଁ ଦେବି ।

—କେତେ ଦେଇପାରିବ ? ତୁମଠାରୁ ଟଙ୍କା ନେଲେ ନିନ୍ଦା ହେବ ।

—ନିଜେ ଦେଇଛ ବୋଲି କହିଦେବ ।

—କେହି ସେ କଥା ବିଶ୍ୱାସ କରିବେ ନାହିଁ । ତାହାଛଡ଼ା ମିଛ କହିବା ଦରକାର ପଡ଼ିବ ।

—ଆଚ୍ଛା, ମୁଁ ନେଇ ନିଜେ ଯିବି ।

—ଅସମ୍ଭବ କଥା । ମଣିଷ ନିଜର ଅଭାବରେ ଘାରି ହୋଇ ମରିବାକୁ ରାଜି ହେବ କିନ୍ତୁ ଅନ୍ୟର ସାହାଯ୍ୟ ନେବ ନାହିଁ । କାରଣ ମୋର ଚଳଣି ହେଲା ମଫସଲିଆ ଚଳଣି—ପଛେ ନ ଖାଇ ମରିବ ହାତ ପତେଇବ ନାହିଁ ।

—ମୁଁ ଯଦି ତୁମ ବାପାଙ୍କର ଗୋଟିଏ ଝିଅ ହୋଇଥାନ୍ତି । ତେବେ...... ।

—ସେ କଥା ମିଛ । ତୁମେ ମୋର ପରିଚିତ ଲୋକ । ବାପାଙ୍କର ପରିଚିତ ନୁହଁ । ତୁମେ ମୋର ବାପାଙ୍କର ଝିଅ ହେବ କେମିତି ?

—ତାହାହେଲେ ଆଉ କିଛି ଫଇସଲା ନାହିଁ ?

—ବୋଧହୁଏ ନାହିଁ । ମଣିଷ ଏମିତି ଏମିତି ତାହାର ସ୍ତରରେ ଜନ୍ମ ଓ ମରଣ ପାଏ । ସେଇ ଜୀବନର ସ୍ତର ହେଉଛି ତାହାର ଜୀବନ ଓ ଜୀବନର ଆଦର୍ଶ । ସେ ସାହାଯ୍ୟ ମାଗିପାରିବ ନାହିଁ ।

ରାଧା ମନକଷ୍ଟ କଲା । ସେ ଆପଣାର ହେବାକୁ ବାଟ ଖୋଜୁଛି । ବାଟ ମିଳୁନାହିଁ । ତାହାର ମନରେ ଏକାନ୍ତ ସହାନୁଭୂତି ଆସୁଛି । କିନ୍ତୁ ସେତକ ସେ ଦେଖାଇ ପାରିବ ନାହିଁ ।

ସମସ୍ତେ ନିୟମ ଅନୁସାରେ ଦୁଃଖ କଷ୍ଟ ଓ ସୁଖ ସୌଭାଗ୍ୟ ଭୋଗ କରନ୍ତି । ନିୟମ ଭାଙ୍ଗିଲେ ବେଶି ଦୁଃଖ । ବୋହୂ ହୋଇ ଆସିଲା ପରେ ସିନା ବୋହୂ କିଛି ଦିଆନିଆ କରିପାରିବ । ରାଧା ତ ବୋହୂ ନୁହେଁ । ବାହାଘର ହୋଇନାହିଁ ।

ବାହାଘର କଥା ବି ପଡ଼ିନାହିଁ । ଦିହେଁ ଦିହଙ୍କ ପାଖରେ ମୁହଁ ହଲହଲ ହେଉଛନ୍ତି । ଏଇ ମୁହଁ ହଲା ଭାବ ମଧ୍ୟ ଆଞ୍ଚଳିକ ସମାଜର ସ୍ୱୀକୃତି ପାଇନାହିଁ । ଦୁଇ ପକ୍ଷର ମୁରବି ପରସ୍ପରକୁ ଚିହ୍ନି ନାହାନ୍ତି ।

ତେଣୁ ରାଧା ଓ କୃଷ୍ଣ ପରସ୍ପର ସ୍ନେହ ଓ ଶ୍ରଦ୍ଧାରେ ବନ୍ଧା ହୋଇ ନାହାନ୍ତି । ଖୁବ୍ ବେଶି ହେଲା ସେମାନେ ନିଜ ନିଜ ଭିତରେ ଠାରଠାରି ହେଉଛନ୍ତି । ଠାରଠାରି ବନ୍ଧନ ନୁହେଁ । ବନ୍ଧନର ଶିଙ୍କୁଳି ନ ଲାଗିଲେ ସମାଜର ସ୍ୱୀକୃତି ନାହିଁ । ଆଉ ସମାଜର ସ୍ୱୀକୃତି ନ ମିଳିଲେ ତୁମେ ଜଣେ ଅଦରକାରି ବାଜେ ଲୋକ ।

ମାଙ୍କଡ଼ ଛୁଆକୁ ମଣିଷ ଛୁଇଁ ଦେଲେ ସେଇ ମାଙ୍କଡ଼ଟି ଗୋଠ ଖଣ୍ଡିଆ ହୋଇଯାଏ । କୁକୁର ଛୁଆକୁ ମଣିଷ ଛୁଇଁ ଦେଲେ କୁକୁରର ମାଆ ଅତ୍ୟନ୍ତ ନିଜର ହୋଇଯାଏ । ଆମର ଘର ଦୁଆର ହେଲା ମାଙ୍କଡ଼ର ଘର ।

ଏଠି ଯେ କୌଣସି ଲୋକ ଯେ କୌଣସି ଲୋକର ହୋଇପାରିବ ନାହିଁ । ହେବାକୁ ଦରକାର ଆଉରି ଗଧବପଣିଆ । ଗଧବ ନ ହେଲେ ମନ ବଡ଼ ହୁଏ ନାହିଁ । ଆଉ ଗଧବ ହେଲା ଗୋଟାଏ ଅଦ୍ଭୁତ ଜନିଷ —ପେଜପିଆ ପାଣିପିଆଠାରୁ ଧର୍ମ । ତେଣୁ ମନଟା ମଧ୍ୟ ସେମିତି ବଡ ଓ ସାନ ହୁଏ ।

ମନ ଶ୍ରେଷ୍ଠ କି ବଡ଼—ଏଥିପାଇଁ ସମସ୍ତଙ୍କର ସମସ୍ତଙ୍କ ସାଙ୍ଗରେ କଳି । ସମସ୍ତେ ମନେ କରନ୍ତି ଯେ ତାଙ୍କର ମନଟା ବଡ଼ ଓ ଭଲ ।

ବିଚରା ମନ ପଞ୍ଜରା ଭିତରେ ଅବା ଖପୁରୀ ଭିତରେ ଛପି କରି ଅଛି । ତାକୁ କେହି ଅଟକଳ କରିପାରନ୍ତି ନାହିଁ ବୋଲି ସମସ୍ତେ କୁହନ୍ତି ଯେ ତାଙ୍କର ମନ ବଡ଼ ।

କିଏ କାହାର ଦେହର ଲମ୍ବା ଚଉଡ଼ାକୁ ଭାବି ମନର ଲମ୍ବା ଚଉଡ଼ା ଠିକ୍ କରେ । ଆଜି କିଏ ତାହାର ଖାନା ପିନା ଓ ପରନାକୁ ନେଇ ମାପେ । ଆଜି କିଏ ତାହାର ଦାନ ଧର୍ମକୁ ଭାବି ଅଟକଳ ନିଏ ।

ଏଣେ ମନଟା ଭାରି ହୃଦଘାଆ । ସେ ସମସ୍ତଙ୍କୁ ଠେକେଇବାରେ ଲାଗିଥାଏ । ଯାହାର ଅଧିକ ଥାଏ ତାହାର ମନଟା ଶ୍ରେଷ୍ଠ ହୋଇଯାଏ । କାରଣ ସେଠି ନିଜ ଛଡ଼ା ଆଉ କାହାରି ସ୍ଥାନ ନ ଥାଏ ।

ଅତ୍ୟନ୍ତ ସ୍ୱାର୍ଥପର ଲୋକ ବି ଭାବେ ତାହାରି ପରି ପବିତ୍ର ମନ ପୃଥିବୀରେ ଦୁର୍ଲ୍ଲଭ । ହେବା କଥା । କାରଣ ସ୍ୱାର୍ଥପର ଲୋକର ମନରେ ନିଜ କଥା ଛଡ଼ା ଆଉ କାହାରି ପାଇଁ ଜାଗା ନ ଥିବାରୁ ସେ ମନେ କରେ ଯେ ତାହାର ସ୍ୱାର୍ଥରୁ ସେ ଯେଉଁ କଣିକାଟିଏ ଦେଲା ସେଥିରେ ସଂସାରର ଅଜସ୍ର ପୁଣ୍ୟ ସେ ପାଇବ ।

କାରଣ ଦେହର ମଳରୁ ଟିକିଏ ସେ ଦେଇଛି । କୃଷ୍ଣ ଥିଲା ସେହି ପ୍ରକାରର ମଣିଷ । ନିଜ କଥା ଛଡ଼ା ଆଉ କାହାରି କଥା ସେ ଭାବିପାରୁ ନ ଥିବାରୁ ବରାବର ଭାବେ ଯେ ତାହାପରି ଭଲଲୋକ ଏଇ ବିଶ୍ୱ-ବ୍ରହ୍ମାଣ୍ଡରେ ନାହାନ୍ତି ।

ତାକୁ ପଛକେ କିଛି ନମିଳୁ ତାହାଠାରୁ କେହି କିଛି ଯେମିତି ନ ନେବେ ସେଥିପାଇଁ ସେ ତତ୍ପର । ବାପାଙ୍କର ଔଷଧ କଥା ନ ବୁଝି ରାଧା ସାଙ୍ଗରେ ଗପିବା ପାଇଁ ସେ ତିଆର—କାରଣ ତାହାର ହୃଦୟ ଅଛି ।

ଡାକ୍ତରଙ୍କଠାରୁ ବାପାଙ୍କର ଅସାଧ୍ୟ ରୋଗ କଥା ବୁଝି ସେ ନିର୍ବିକାର । କାରଣ ତାହାର ଚେତନା ଅଛି ।

ବାପା ଚାଲିଗଲେ ଆଉ ଫେରିବେ ନାହିଁ – ଏତିକି ଜାଣି ମଧ୍ୟ ସେ ନିର୍ବିକାର । କାରଣ ସେ ମନେ କରେ ଯେ ତାହାର କର୍ତ୍ତବ୍ୟ

ସେ କରନ୍ତୁ । ଯେଉଁ ଅଳ୍ପସଳ୍ପ ସେ ଖର୍ଚ୍ଚ କଲା, ସେତିକରେ ତାହାର ସଚ୍ଚା ମନ ଦେଖାଇବା ପାଇଁ ଯଥେଷ୍ଟ ।

ଫେରି ଆସିଲା ରାଧା ଘରକୁ ।

—ଡାକ୍ତର ତାହାହେଲେ ଏମିତି କହନ୍ତି ଲେ । କହନ୍ତୁ । ମୁଁ ଯିବି ତାଙ୍କୁ ଦେଖିବାକୁ ।

—ନା, ନା, ସେତିକ ଦରକାର ନାହିଁ । ଅନେକ ଲୋକ ଅଛନ୍ତି ଦେଖାଶୁଣା କରିବାକୁ ।

—ଥାଇ ପାରନ୍ତି । ମୋର ଇଚ୍ଛା ହେଲେ ମୁଁ ଯେ କୌଣସି ରୋଗୀ ପାଖକୁ ଯାଇପାରେ । ଅବଶ୍ୟ ଏରୋଗ ମଣିଷ ହୋଇଥିଲେ ଯିବା ପାଇଁ ଅନୁମତି ଖୋଜନ୍ତି ।

—ବାପା କ'ଣ ଭାବିବେ କେଜାଣି ।

—ଭାବିବେ ନାହିଁ । ସେ ଖୁସି ହେବେ । ରୋଗୀର ବିଛଣା ପାଖକୁ କେହି ଆସିବାକୁ ଚାହେଁ ନାହିଁ । ଯିଏ ଯାଏ ସେଥିରେ ରୋଗୀର ମନ ଭଲ ହୁଏ ସିନା ଖରାପ ହୁଏ ନାହିଁ ।

—ଆମ ଘରେ ସମସ୍ତେ ଅଡ଼ୁଆ ଭାବିବେ ।

—ତୁମେ କ'ଣ ଭାବିବ ?

—ମତେ ବି ଅଡ଼ୁଆ ଲାଗିବ । ତୁମକୁ ମାନସମ୍ମାନ ଟିକିଏ ନ ମିଳିଲେ ମତେ ଖରାପ ଲାଗିବ ।

—କହିଲେ ଖରାପ ଭାବିବ ନାହିଁ । ତୁମେ ଘରେ ରହି ରହି ସମସ୍ତଙ୍କର ବୋଲକରା ହେଇଗଲଣି । ତୁମ ପାଖକୁ କି ତୁମର ବାପାଙ୍କ ପାଖକୁ କିଏ ଆସିବ ନ ଆସିବ—ସେ ବିଚାର ମଧ୍ୟ ତୁମର ହେଉନାହିଁ ।

—ଇଏ ପରା ଆମର ଚଳଣି । ଆମର ସମାଜରେ ଜଣେ ସ୍ତ୍ରୀ ଲୋକ ଘର ଲୋକଙ୍କର ମତ ନ ନେଇ ଘରକୁ ଆସିପାରେ ନାହିଁ ।

—ସତରେ ? ତାହାହେଲେ ଏମିତି ଏଇ ଧାରଣା ରୂଳବା ମୁଁ ଖୋଜେ ନାହିଁ । ମୁଁ ଯିବ—ନଷ୍ଟପ୍ ଯିବ । ଆଜି ଆଜ ଯିବ । ତୁମର ମାଆଙ୍କୁ କହିଦବ ଯେ ରାଧା ଆସିବ ।

—ଅଚ୍ଛା କଥା ହେଲା । ବାପାଙ୍କର ଦେହ ଖରାପ । ସେଥି ଭିତରେ ତୁମେ ଗୋଟିଏ ଅଖାଡ଼ୁଆ କଥା ଆରମ୍ଭ କଲଣି ।

—ଆଉ ଚା' ଖାଇବ ?

—ନା । ମୁଁ ଘରକୁ ଯିବ ।

—ମତେ ଅପେକ୍ଷା ରଖିଥିବ ।

—କେତେବେଳେ ଆସିବ ?

—ଯେତେବେଳେ ମନ ଡାକବ ।

ଦହେଁ ଦହିଁଙ୍କୁ ଚାହିଁଲେ । ପ୍ରୀତି କାହିଁ ? ମନ ମନ ସାଙ୍ଗରେ ମିଶୁନାହିଁ । ଆଖି ଆଖି ସାଙ୍ଗରେ ମିଶୁନାହିଁ । ମତ ମତ ସାଙ୍ଗରେ ମିଶୁନାହିଁ । ନୂଆ କଥା ପୁରୁଣା କଥା ସାଙ୍ଗରେ ମିଶୁ ନାହିଁ ।

ବୁଦ୍ଧି ଶୋଇଗଲାଣି ।

ସବୁ କଥା ବୁଝିବା ବୁଦ୍ଧିର କାମ ନୁହେଁ । ଅସୁବିଧାକୁ ସଜାଡ଼ି ସୁବିଧା କରିବା ବୁଦ୍ଧିର କାମ ।

ମନ ବି ଦବି ଗଲାଣି । କଥା ଠିକ୍ କି ଭୁଲ ବିଚାରିବାକୁ ସମସ୍ତେ ସୁବିଧା ଖୋଜନ୍ତି । ଡର ଭୟ ନ ଥିବ । ଭୁଲ ହେବାର ଭୟ ନଥିବ । ତାହାହେଲେ ମନ ତେଜ ହେବ ।

ଏବେ ରାଧା ଡରାଇ ଦେଲାଣି କୃଷ୍ଣର ମନକୁ । ବିଚରା ଆସିଥିଲା ଲେଢ଼ା ସାଙ୍ଗରେ ହେରଷାମି କରିବାକୁ । ସେଇଟା ଦେହର ରଙ୍ଗ । କଥାର ଚଟକ । ସେଥିରେ କର୍ତ୍ତବ୍ୟବୋଧକୁ ଆଣି ଯୋଡ଼ିଲେ ମନ ଭିତରୁ ହେରଷାମି ଯାଇ କେଜାଣି କେତେ ଦୂରରେ ପହଞ୍ଚିବ । କୃଷ୍ଣ ସେଇ ଅଡ଼ୁଆରେ ପଡ଼ିଗଲା ।

ରାଧା ପାଖକୁ ସେଦିନ ନ ଆସିଥିଲେ ଖୁବ୍ ଭଲ ହୋଇଥାନ୍ତା । ଆସିବାରୁ ପିନା ସେ କୃଷ୍ଣର ବୁଦ୍ଧିକୁ ପରଖି ପାରେ ତାହାର ସାହସ ଉପରେ ପାପୁଲି ଠୋକିର ଦେଇ ପାରିଲାଣି । ଏବେ ବନ୍ଧୁଆ ମରଦ-ଟାଏ ଏବେ ଲୁଚୁପୁଚୁ ହେଲାଣି ।

କର୍ତ୍ତବ୍ୟକୁ ଆଗରେ ନ ଦେଖିବା ଯାଏ ସମସ୍ତେ ବଡ଼ ସରଦାର ଅପର ପକ୍ଷର ହାତ ହତିଆର ନ ଦେଖିବାଯାଏ ସମସ୍ତେ ଅତି ବଡ଼ ବୀର ।

ରାଧାର ଭଜନ୍ କଥା ଶୁଣି କୃଷ୍ଣର ବୁଦ୍ଧି ଗ୍ଲେଟ ହେଇଗଲାଣି । ସେ ମନକୁ ମନ ଭାବିଲା—ଠାକୁରେ ଯାହା କରିବେ ।

—ହେ ଠାକୁର, ତୁମକୁ ଭୋଗ ଦେବି । ଏଇ ରାଧା ଆମ ଘରକୁ ନ ଆସନ୍ତା କି । ଆସିଲେ ନିଜର ସୁନ୍ଦର ଚରିତ୍ର ଉପରେ ଛିଟା ଲାଗିବ । ଆଉ ନିଜ ଘରେ ଏମିତି ଚରିତ୍ରକୁ ବଗାଡ଼ି କାଳି ବୋଳିବା ମରିବା ସାଙ୍ଗରେ ସମାନ ।

ମଣିଷ ଚାହେଁ ନିଜ ଘରେ ପରିବାର ପାଖରେ ଚରିତ୍ର ରଖିବାକୁ ସେଇଠୁ ଚାହେଁ ନିଜର ଅଞ୍ଚଳରେ ସେଇ ଚରିତ୍ରକୁ ଉଚ୍ଚା କରି ରଖିବାକୁ ସେଥିପାଇଁ ସେ ସବୁବେଳେ ଡରି ମରୁଥାଏ—ସେମାନେ କ'ଣ କହିବେ, ଜାଣିବାପାଇଁ ।

ସେମାନେ ନ ଥିଲେ ସେ ଗୋଟାଏ ପୂରା କଳାବୋଳା ହନୁ-ମାଙ୍କଡ଼ ହେଇ ରହିଥାନ୍ତା । ସେମାନେ ଅଛନ୍ତି ବୋଲି ମଣିଷ ନିଜକୁ ସଜେଇ ବାଗେଇ ଚଳନସହି କରିବାକୁ ହାମେଶା ତିଆର ।

ସେଥିପାଇଁ ସେ ପାଠ ପଢ଼େ । ଚାକିରି କରେ । ଗ୍ରେଡ଼ କରି-ବାକୁ ବହୁତ ପଛେଇଯାଏ । କାରଣ ତାହାର ଭଲ ଚରିତ୍ର ଦରକାର । ସେ ଚରିତ୍ରକୁ ଡରୁଥାଏ ।

ଯେଉଁମାନେ ଚରିତ୍ରକୁ ଡରନ୍ତି ନାହିଁ ସେମାନେ ଜଡ଼ାପଟ ମାରି ନେଉଥାନ୍ତି । ପରୀକ୍ଷାରେ କପି କରି ସୁନା ମେଡ଼ାଲ ଧରି ପକାଇ

ଖବର କାଗଜରେ ଫଟୋ ଛପେଇ ଦିଅନ୍ତି । ଅଫିସ ଡିହବିଲ ଲୁଟି କରି ରାମାୟଣ ପାରାୟଣ ଶୁଣିବାକୁ ଆଗ ଧାଡ଼ିରେ ବସିଯାନ୍ତି । ଡବଲ ଡେବଲ ରସିକା ଯୋଗାଡ଼ କରି ପୂରା ସାଧୁ ବେଶରେ ଘରେ ପଶନ୍ତି ଓ ଘରୁ ବାହାରନ୍ତି ।

ଚରିତ୍ରକୁ ଡ଼ରି ଡ଼ରି ଚଳିବା ଭଲ ଚରିତ୍ର ନୁହେଁ ।

ଚରିତ୍ରକୁ ମୋଟେ ନ ଡ଼ରିବା ହେଉଛି ଉଚ୍ଚା କିସମର ସାହସ ।

ଡ଼ର ହେଉଛି ମନର ବିଷୟ । ସାହାସ ହେଉଛି ବୁଦ୍ଧିର ବିଷୟ । ଦେହ କିନ୍ତୁ ପସନ୍ଦ କରେ ଡରକୁ । ସାହାସୀ ହେବାକୁ ଗୁହିଁଲେ ସେ ଡ଼ାକେ ବୁଦ୍ଧିକୁ । ସେଦିନ କୃଷ୍ଣ ବୁଦ୍ଧିକୁ ହେଜି ହେଜି ଘରକୁ ଫେରିଲା ।

—ମାଆ, ଡାକ୍ତର କହିଲେ ସେଇ ପୁରୁଣା ଚିକିତ୍ସା ଗ୍ଲୁଲୁ ରହିବ । ଦି'ଦିନ ପରେ ଯାହା ହେବ ।

—ପୁଅରେ, ବାପା ଆଉ ବଞ୍ଚିବେ ନାହିଁ । ତୁ ଗଲାପରେ ମୁଁ ଦୁଇ ତିନ ଥର ଦେଖିଲେଣି ତୋ ବାପାଙ୍କ ମୁଣ୍ଡ ପାଖରେ ନିଆଁ ଜଳୁଛି ।

—ଏଁ ।

—ସତରେ । ସେମିତି ଦିଶେ ପରା । ମତେ ଦିଶିଲା । ସେ ଆଉ ଭଲ ହେବେ ନାହିଁ । ସେ ଔଷଧ ଆଉ ଖାଉ ନାହାନ୍ତି । ସେ ବୋଧହୁଏ ବୁଝିପାରିଲେଣି ।

—ନା ।

—କହୁଥିଲେ ମତେ । ଦେଖ ଦେହର ସବୁଆଡ଼ ବିଗିଡ଼ିଯାଇଛି । ଗୋଟାକୁ ଧଇଲେ ଆଉ ଗୋଟିଏ ବଙ୍କା ହେଇଯାଉଛି ।

—କ'ଣ ବ୍ୟସ୍ତ ହେଲେ ?

—ନାହିଁ, କହିଲେ ଯେ ଏମିତି ଦିନେ ଅସହାୟ ହୋଇ ପଡ଼ିପାରନ୍ତି ବୋଲି ସେ କେବେହେଲେ ଭାବି ନ ଥିଲେ । କହି ତୁନି ପଡ଼ିଲେ ।

—ଏବେ ସେ ତ ଶୋଇଛନ୍ତି ।

—ନାହିଁ । ବୋଧହୁଏ ତାଙ୍କର ମନଟା ମେଘ ଢ଼ଙ୍କା ହୋଇ ଯାଇଛି ।···ହୋଇ, ଦେଖ୍, କିଆଁ ଜଳୁଛି ବାପାଙ୍କର ମୁଣ୍ଡ ପାଖରେ—ଚକଆ ପନ୍ଥଆଡ଼େ ।

ପରଦା ଟେକି ରାଧା ଘରଭିତରକୁ ପଶିଆସିଲା । ମାଆଙ୍କୁ ନମସ୍କାର ହୋଇ ସେ ଟୁଲ ଉପରେ ବସିଲା ।

—ବାପାଙ୍କ ଦେହ ଏତେ ଖରାପ ହୋଇଛି ବୋଲି ମୁଁ ଆଜି ଜାଣିଲି ।

—ଅଠର ଦିନ ହେଲା ଭଲ ହେଉ ନାହିଁ ।

—ସେ କ'ଣ ଶୋଇଛନ୍ତି ?

—କହିପାରିବ ନାହିଁ । ମାଆ କଣ୍ଠସ୍ୱର ଦୁର୍ବଳ ଶୁଭିଲା ।

—କେମିତି ଜଣାଯାଉଛି ।

— ଖରାପ । ଦୁଇ ଦିନ ହେଲାଣି ମତେ ଖରାପ ସୂଚକ ଦିଶୁଛି ।

—ମୋର ବାପାଙ୍କର ଦେହ ଖରାପ ଥିଲାବେଳେ ସେମିତି ଖରାପ ଜଣାଯାଉଥିଲା ।

କୃଷ୍ଣ ଆସି ପହଞ୍ଚିଗଲାଣି ।

—ହେଇ ଥାଉ ସେଇ କଥାଗୁଡ଼ାକ । ରୋଗୀ ବିଛଣା ପାଖରେ ଏମିତି କଥାମାନ କହିବା ଠିକ୍ ନୁହେଁ ।

ରାଧା ଯାଇ ଗୋଡ଼ରେ ହାତ ବୁଲାଇଲା । ଆଖି ଖୋଲି ବାପା ଚାହିଁଲେ । ପୁଣି ଆଖି ବୁଜିଦେଲେ ।

—ଚେତା ଅଛି ତ !

—ନ ଥିଲା, ଏବେ ଆସିଛି ।

କୃଷ୍ଣ କୋଳ ଟାଣି ଅଣାହେଲା । ସେ ଆଉ ପାଟି ଖୋଲିଲେ ନାହିଁ କି ଆଖି ଖୋଲିଲେ ନାହିଁ ।

ସମସ୍ତେ ଚୁପ ପଡ଼ିଲେ । କ'ଣ କରାଯିବ । ?

ମଣିଷ ବଞ୍ଚିଥିବା ଯାଏ ଆଖିରେ ପିଞ୍ଚି ପକାଉଥିବ । ଡ଼ାକିଲେ ଶୁଣୁଥିବ । ପାଟି ପାଖରେ କିଛି ଦେଲେ ଖାଉଥିବ । ନିଶ୍ୱାସ ମାରୁଥିବ । ନ ହେଲେ ତାକୁ କୁହାଯାଏ ସଙ୍କଟ—ସନ୍ଧି ।

ଡାକ୍ତର ଡ଼ାକିବା ଦରକାର । ସେ କିଛି ଔଷଧ ବରାଦ କରିବେ ।

—ସେ ପରା ଔଷଧ ବନ୍ଦ କରିଦେଲେଣି । ମନା କଲେ ଆଉ ଔଷଧ ଖାଇବେ ନାହିଁ ।

—ତେବେ ବି ଡାକ୍ତର ଡକାଇବା ଦରକାର ।

ରାଧା ଉଠିଲା ଡାକ୍ତର ଡ଼ାକିବାକୁ ।

ଘର ଲୋକ ସମସ୍ତେ ମିଶି ମନା କଲେ ।

—ଡାକ୍ତର ଆସିଲେ ଖରାପ କ'ଣ ?

—ଲାଭ ନାହିଁ । ବାପା ଔଷଧ ଖାଇବେ ନାହିଁ ।

—ଅନ୍ତତ ଚେତା ରଖାଯିବ ତ ।

ସମସ୍ତେ ବିରକ୍ତ ହେଲେ ରାଧା ଉପରେ । ଘର ଲୋକ ନିଜର ଲୋକଙ୍କର ଭଲମନ୍ଦରେ ସିନା ଶେଷ କଥା କହିବେ । ଯେ ଯୁଆଡ଼ୁ ଆସି ପହଞ୍ଚିବ ସେ କ'ଣ ଠିକଣା ଆଉ ସେବାର ବରାଦ ନେବ ।

ରାଧା ଚୁପ୍ ରହିଲା । କାହାର ସମର୍ଥନ ପାଉ ନାହିଁ । କୃଷ୍ଣ ଅନ୍ୟଆଡ଼େ ଅନାଇଥାଏ । କୃଷ୍ଣର ନିଜ ଲୋକେ କୃଷ୍ଣ ଆଡ଼କୁ କଠମଠ ହୋଇ ଚାହିଁଥାନ୍ତି । କୃଷ୍ଣର ମାଆ ତଳକୁ ମୁହଁ ପୋତି ବସିଥାନ୍ତି ।

ରାଧା ଯାଇ ପୁଣି ଦେହରେ ହାତ ବୁଲାଇଲା । ବାପା ଆଖି ମେଲା କଲେ । ରାଧା ନେଇ ଗ୍ଳୁକୋଜ ପାଣି ଧରିଲା ପାଟି ପାଖରେ ।

—ନାହିଁ, ଅଉ କାମରେ ଲାଗିବ ନାହିଁ ।

—ଖାଲି ଗ୍ଳୁକୋଜ ପାଣି ।

ପାଟି ଅଳ୍ପ ମେଲା କରି ଚାମୁଚରେ ପାଣି ନେଇ ଆଖି ବୁଜିଲେ ।

---ବାପା, ବାପା, ଆଉ ଟିକିଏ । ବଳ ପାଇବ ।

ସେ ଆଉ ଆଖି ଖୋଲିଲେ ନାହିଁ । କିନ୍ତୁ ସମସ୍ତେ ବିରକ୍ତ ହୋଇଗଲେଣି ବାପାଙ୍କ ଉପରେ ।

ବେମାରିରେ ଧାରି ହୋଇଥିବାରୁ ସେ ନିଜ ଲୋକ ଓ ପର ଲୋକଙ୍କୁ ବାରି ପାରୁନାହାନ୍ତି ।

ଏଇଟିକ ହେଉଛି ଦେହ ଓ ମନର ଫରକ । ଏଇଟିକ ମଧ୍ୟ ମନ ଓ ବୁଦ୍ଧିର ଫରକ ।

ନିଜଲୋକ ଓ ପରଲୋକ ବାରିବା ମନର ବିଷୟ । ସେଇ ମନ ପାତର ଅନ୍ତର କରେ ନାହିଁ । ଆଉ ପାତର ଅନ୍ତର ଆଣେ ବୁଦ୍ଧି ।

ବୁଦ୍ଧି ହେଉଛି ମଣିଷର ଅନୁଭବ । ସେ ଚଳେ ସଂସାରର ନିୟମରେ । ସମାଜର ନିୟମରେ । ମରଣ ପାଖ ହେଲାବେଳେ କାହାରି ଆଉ ବୁଦ୍ଧି ଦରକାର ହୁଏ ନାହିଁ । ତାହାର ଦରକାର ହେଉଛି ଦେହ ଓ ମନ ।

ଦେହ ପାଇଁ ମାୟା ତୁଟି ଗଲାଣି । ସେଥିପାଇଁ ମନ ହେଉଛି ସରଦାର । ସେ କାହାଁକି ବାଛବିଚାର କରିବ ? ମନ ପାଖରେ ଗ୍ଲୁକୋଜ ପାଣି, ପଇଡ଼ ପାଣି, ଫଳରସ ସବୁ ସମାନ । କିନ୍ତୁ ଦେହ ଆଉ ଖୋଜୁ ନାହିଁ ଭୋଗିବାକୁ ।

ମରଣ ପାଖ ହେଲେ ପାଖ ହୋଇଯାନ୍ତି ପରମାତ୍ମା—ଭଗବାନ୍ ! ସେଇ ପଠାଇଥିଲେ ତାଙ୍କରି କାମରେ ଓ ଫେରାଇ ନେବେ ନିଜ ପାଖକୁ । ସେ ଆଉ ଦେହ କଥାକୁ ଆଖି ଦେଉ ନାହାନ୍ତି । ଯେତେ ଦିନ ଦେହଟା ଦରକାର ଥିଲା ସେ ତାକୁ ଯତ୍ନ କରି ବଢ଼େଇ ରଖିଥିଲେ ।

ଧାନ ପାଚିଛି । ଧାନ କଟାହେବ । ଆଉ ଧାନ ମୂଳରେ ଖତ ପାଣି ଓ ଯତ୍ନ ଅଜାଡ଼ିଲେ ଲାଭ ନାହିଁ ।

ରାଧା ନିଜର ବାପାଙ୍କର ମରଣ ଦେଖିଥିଲା । ସେ ଜାଣିଗଲା ଯେ କୃଷ୍ଣଙ୍କର ବାପା ଆଉ ବେଶି ସମୟ ରହିବେ ନାହିଁ । ମନରେ ଖୁସି ହେଉଥିଲା ଯେ ସେ ରାଧା ହାତରୁ ଟୋପେ ପାଣି ନେଇଛନ୍ତି ।

କୃଷ୍ଣ ବିରକ୍ତ ହେଉଥିଲା ରାଧା ଉପରେ । ଉପରେ ପଡ଼ି ପହଞ୍ଚି ଯିବାରୁ ଘରେଇ କଳହଟିଏ ସୃଷ୍ଟି କରି ସାରିଲେଣି—ବାପା ଆମର ନା ରାଧାର ? ଏଇ ରାଧା କିଏ ?

କୃଷ୍ଣକୁ ଭିତରକୁ ଡ଼ାକିନେଇ ସମସ୍ତେ ବିରକ୍ତ ହେବାକୁ ଆରମ୍ଭ କଲେ—ସେଇ ଡ଼ାକ୍ତରକୁ କି'ଣ ଆଣିବାକୁ ଯାଇଥିଲ ? ବାପାଙ୍କୁ ସେ ହଇରାଣ କରି ଦ'ଥର ଉଠେଇଲା କାହିଁକି ?··· ଏସବୁକୁ ବାପା ଘୃଣା କରନ୍ତି ।

—ତାଙ୍କୁ କହିବା ଭୁଲିଯିବା ପାଇଁ ।

—ଡ଼ାକିଲା କାହିଁକି ? ସେ ଜାଣିଲା କେମିତି ଯେ ଆମର ବାପାଙ୍କର ଦେହ ଖରାପ ଅଛି ବୋଲି । ସେ ଆମର ବାପା—ଆମେ କି'ଣ ତାଙ୍କ କଥା ବୁଝିପାରୁନୁ ନାହିଁ ଯେ ମାମଲତକାର ଆସି ପହଞ୍ଚିଗଲେ ।

କୃଷ୍ଣ ହେଇଗଲେଣି ମାମଲତକାରର ଟାଉଟ । ସେଇସବୁ ଅନର୍ଥ ସୃଷ୍ଟି କରୁଛି ।

ଏଣେ ରୋଗୀ ଆଉକୁ ଗୃହିଁଲା ବେଳକୁ ରାଧା ବସି କୃଷ୍ଣ ମା'ଆଉ ଆଖିରୁ ଲୁହ ପୋଛୁଛି ।

ସମସ୍ତେ ଜାଣିଲେ ଯେ ରାଧା ଏବେ ମୃତ୍ୟୁବେଳେ ପାଣି ବାପାଙ୍କ ପାଟି ପାଖରେ ଅଜାଡ଼ି ଦେଇ ଏବେ ମାଆର ଆଖିରୁ ପାଣି ପୋଛୁଛିଲାଣି ।

ଏସବୁ ବନ୍ଦ କରିବାକୁ ହେବ । —ମାଆ, ତମେ ଆସିଲ । ଏଠି ତୁମକୁ ସମସ୍ତେ ଖାଲି କରିଦେଇବେ ।

—ମାଆ, ବ୍ୟସ୍ତ ହୁଅ ନାହିଁ । ରାଧା କହିଲା ।

ସମସ୍ତେ ବିରକ୍ତ ହୋଇ ମାଆକୁ ଭିତରକୁ ଘେରବନ୍ଦୀ କରି ନେଇଗଲେ । ରାଧା ଏକୁଟିଆ ରହିଲା ।

ନିଜର ଲୋକଙ୍କୁ ଘେରବନ୍ଦୀ କରି ଜଗି ରହିବାର ନାମ ହେଲା ସଂସାର । ସ୍ତ୍ରୀ ନା ପରିବାର । ଏଇ ଆଇନ ହେଉଛି ସରକାରୀ ଆଇନର ଭାଇ । କିଏ କ'ଣ ପଢ଼ିବ, କି ଧନ୍ଦା ଧରିବ, କେଉଁଠି ବାହା ହେବ । —ଏସବୁ ସ୍ଥିର ହେବ ନିଜର ଲୋକଙ୍କ ମେଳରେ ।

ବାପାଙ୍କର ସ୍ନେହ ମମତା ସବୁ ରଖିବାକୁ ହେବ ନିଜପାଇଁ । କାରଣ ସ୍ନେହ ମମତା ହେଉଛି ବ୍ୟାଙ୍କ୍‌ର ଫିକସଡ଼ ଡ଼ିପୋଜିଟ୍ । ସେଥିରେ କେହି ଭାଗୀଦାର ନାହାନ୍ତି ।

ଦେହ ଖରାପ ଥିବାରୁ ବାପା ସିନା ଆପଣା—ପର ବୁଝି-ପାରିଲେ ନାହିଁ । ଆଉ ସେଥିପାଇଁ ରାଧା ଅଛି ତାଙ୍କ ପାଖରେ ଝୁଲି ଲଗା ହୋଇ ବସି ଗଲାଣି ।

ବାପା ପୁଣି ଆଖି ଖୋଲିଲେ । —ନା, ଆଉ ହବ ନାହିଁ । ଚଢ଼ ମାଡ଼ିଲାଣି । ସେମାନେ କାହାନ୍ତି ?

ରାଧା ଧାଇଁଗଲା ଭିତରକୁ—ବାପା ଖୋଜୁଛନ୍ତି ।

—ଏଁ ...। ସମସ୍ତେ ଚାଲିଆସିଲେ । ବାପା ପୁଣି ଶୋଇଗଲେଣି ...କଣ ମିଛ ନା ସତ ? ବାପା ଖୋଜିଲେ ପରା ସମସ୍ତଙ୍କୁ...ସେ ତ ସେମିତି ଆଗପରି ଏକା କଡ଼ମାଡ଼, ଏକାପରି ଆଖି ବନ୍ଦ କରି ଶୋଇ-ଛନ୍ତି । ଆଉ ଯେ ଉଠିଲେ କେମିତି ? ...ଉଠି ନ ପାରନ୍ତି ।

ରାଧା ଉଠିଲା । କ୍ଷୁଷ୍ଟକୁ କହିଲା ସେ ଯାଉଛି ବୋଲି ।.... ସମସ୍ତେ ଚୁପ୍ ରହିବାରୁ ଗୋଟିଏ ଗୋଟିଏ ହୋଇ ଯେଉଁବାଟେ ଆସିଥିଲ ସେଇବାଟେ ଚାଲିଲା ।

ଚାଲାବେଳେ ଯିବୁଥାଏ ଯେ ଜଣକ ଦେହରେ ଆଉ ଜଣକର ରକ୍ତ ଦିଆ ଯାଇପାରେ । ଆଖି, କିଡ଼ନି, ହାର୍ଟ ଆଦି ଅପରେସନ୍ କରି ରୋପଣ କରାଯାଇପାରେ । ଖାଲି ଗୋଟିଏ କଥା ସମ୍ଭବ ନୁହେଁ—ପୂରା ଦେହକୁ ନେଇ ଆଉ ଜଣକ ଭିତରେ ରଖିବା ।

ମନକୁ ମଧ୍ୟ ନେଇ ଆଉ ଜଣକ ମନ ମଧ୍ୟରେ ରଖାଯାଇପାରିବ ନାହିଁ । ଜଣକର ବୁଦ୍ଧିକୁ ନେଇ ଆଉ ଜଣକ ବୁଦ୍ଧିରେ କଲମୀ କରି-ଯାଇପାରିବ ନାହିଁ । ନିଜେ ଭଗବାନ ମଧ୍ୟ ପାରିବେ କି ନାହିଁ କେଜାଣି ।

ଆସିଥିଲା ନିଜର ହେବାକୁ । ଫେରିଗଲା ଆଉରି ଦୁରିଆ ପର ହୋଇ । ପର ମଣିଷ ନିଜର ହେବାକୁ ଅଭିଳାଷ ବାନ୍ଧିବା ହେଉଛି ଗୋଟାଏ ପ୍ରକାରର ଶତ୍ରୁତା । ଯାହାକୁ କୁହାଯିବ ମାରାତ୍ମକ ଉତେଜନା ।

ଗୃହ ଗୃହ ନିଜ ଘରକୁ ଫେରିଲା । ସେତେବେଳେ ତାହାର ସନ୍ଧାନ ଭୂତ ଆସିଲା କୃଷ୍ଣ ଉପରେ—ବିଚରା ଧାଇଲା ହୋଇ ନିଜ ଲୋକଙ୍କ ମେଳରେ ତାଙ୍କର ସତର୍କ ଗୃହାଣୀ ଭିତରେ ରହୁଛି । ସ୍ୱାଧୀନତା ନାହିଁ । ଏଣେ ପରାଧୀନ ବୋଲି ମଧ୍ୟ ନିଜକୁ ଭାବି ପାରୁ ନାହିଁ ।

ଏଇ ପ୍ରକାରର ଅସଂଖ୍ୟ ଲୋକ ସବୁ ମୁରକରେ ଅଛନ୍ତି । ତାଙ୍କର ବୁଦ୍ଧି ବିଦ୍ୟା ନିଜ ଲୋକଙ୍କ ପାଖରେ ବନ୍ଦୀ । ବନ୍ଦୀର ସ୍ୱାଧୀନତା କୁଆଡୁ ଆସିବ ?

ଆଉ ସ୍ୱାଧୀନତା ନ ମିଳିଲେ ମଣିଷ ବଢ଼ିବ ନାହିଁ ।

ରାଧାର ବାପା ମରିଥିଲେ ଦୂର ବିଦେଶରେ । ସେତେବେଳେ ରାଧାକୁ ପଚିଶ ପୂରି ଛବିଶ । ସେ ହେଉଛି ଘରକୁ ବଡ଼ ଓ ପାଠୁଆ । ମା ହେଉଛି ଗାଁଉଲି ଝିଅ—ସେବା ସ୍ନେହର କର୍ତ୍ତବ୍ୟ ବୋଧ ହେଉଛି ତାହାର ଏକମାତ୍ର ଅସ୍ତ୍ର । କିନ୍ତୁ ଏଇ ଅସ୍ତ୍ରରେ ଦୂର ବିଦେଶରେ ସ୍ୱାମୀର ଶବସତ୍କାର କରି ଶୁଦ୍ଧି ଶ୍ରାଦ୍ଧ ସାରି ନିଜର ଜିନିଷପତ୍ରକୁ ଟ୍ରେନ୍‌ରେ ବୋଝେଇ କରି ନିଜ ଦେଶକୁ ଫେରିବା ସମ୍ଭବ ନୁହେଁ ।

ସେତକ ଈଶ୍ୱର ସମ୍ଭବ କରାଇଥିଲେ । —ରାଧା ଜରିଆରେ । ବାପା ମରିବାର ଦଶ ବର୍ଷ ପରେ ସେ ସବୁ ସମ୍ବଳ ଗୋଟାଇ ଫେରିଲା ଓଡ଼ିଶାକୁ । ଓଡ଼ିଶାରେ ଖଣ୍ଡେ ଗାଉଁଲି ମେଳ ଢ଼ିହ ରହିଛି । କିନ୍ତୁ ଘର-ଦୁଆର ନାହିଁ ।

ବିଦେଶରେ ପର ମଣିଷଙ୍କ ମେଳରେ ମଣିଷ ନିର୍ଭୟ କି ନିଜ ଦେଶରେ ନିଜ ମଣିଷଙ୍କ ମେଳରେ ମଣିଷ ନିଶ୍ଚିନ୍ତ—ଏଇ କଥା ଗଧା ବୁଝି ନ ଥିଲା ।

ଫେରି ଆସି ଦେଖିଲା ଯେ କାହାରି ମୁହଁରେ ହସର ଓ ଆବେଗର ଝିଲିକାଏ ବି ନାହିଁ । ସତେ ଯେପରି ଭିଡ଼ ରେଳଡ଼ବା ଭିତରକୁ ନିଜର ଲୋକଟିଏ ପଶି ଆସିଛି ।

ସୁବିଧା କରାଇବା ବଦଳରେ ଅସୁବିଧା ବେଶି କରିବାକୁ ଆସିଛି । ସମସ୍ତଙ୍କ ବ୍ୟବହାରରେ ସେଇ ଗୋଟିଏ ଭାବ ।

ଯିଏ ଦୂରକୁ ଯାଇଥିଲା ସେ ପୁଣି ଘରକୁ ଫେରିବ କ'ଣ ପାଇଁ । ନିଜର ସୁବିଧା ନିଜେ କ'ଣ କରିପାରିବ ? କିଏ ଅବା କଲେଣି ? ଖାଲି ଅନ୍ୟର ଅସୁବିଧା କରିବା ସାର । ଆଜି ଯେଉଁମାନେ ନିଜର ଲୋକ ସେଇମାନେ ଭୋଗିବେ ସିନା ।

ଯେଉଁମାନେ ଘର ଛାଡ଼ି ବିଦେଶ କରି ସେଠି ନିଜର ପ୍ରିୟଜନର ଆରଦୋଳ ସୃଷ୍ଟି କରିଛନ୍ତି ସେମାନେ ବୁଝିବେ । ଆଜି ବୁଝିବେ ଯେ ବିଦେଶୀଙ୍କୁ ନିଜର କରିବାକୁ ବହୁତ ବୁଦ୍ଧି ଓ ବହୁତ ମନ ଦରକାର ।

କିନ୍ତୁ ବିଦେଶକୁ ଛାଡ଼ି ଘରକୁ ଫେରିଲେ ଯେତେବେଳେ ନିଜ ଲୋକଙ୍କର ଶତ୍ରୁତା ଓ ଅବହେଳାକୁ ଭଲ ବୋଲି କହି ଓ ବୁଝାଇ ତାଙ୍କୁ ପୁଣି ନିଜର କରିବାକୁ ଚେଷ୍ଟା କରାଯାଏ ସେତେବେଳେ ଜଣାଯାଏ ଯେ ସ୍ୱାର୍ଥ ପାଖରେ ଓ ଛୋଟ ମନ ପାଖରେ ବୁଦ୍ଧିର ହଟଚମଟ ହେଉଛି ପାଣିର ଗାର ଓ ଦମକା ପବନର ଛୁଇଁକାଏ ।

ବୁଦ୍ଧିର କିଛି ଅର୍ଥ ନାହିଁ ।

ଉପଯୁକ୍ତ ହତିଆର ନ ମିଳିଲେ କାଠରେ କାମ ନାହିଁ । ପଥରରେ କାମ ନାହିଁ । ଲୁହା ପିତଳ ଆଦି ଧାତୁରେ କାମ ନାହିଁ ।

ସେମିତି କାଠ, ପଥର, ଲୁହା, ପିତଳ ନ ମିଳିଲେ ଖାଲି ଉପଯୁକ୍ତ ହତିଆରରେ ମଧ୍ୟ କାମ ହବ ନାହିଁ ।

ଲୋକଙ୍କର ହୃଦୟ ଥିଲେ ସିନା ମଣିଷ କାହା ପାଖରେ ଶରଣ ପଶିବ । ଯଦି ସେମାନଙ୍କର ହୃଦୟ ଅତି ସ୍ଥୂଳ ଓ ଅତି ଆପଣା-ସ୍ୱାର୍ଥିକା ହୋଇଥାଏ ତାହାହେଲେ ମଣିଷର ବୁଦ୍ଧି ମଧ୍ୟ ଅକାରଣ । କେଣ୍ଟ ମଣିଷ ବୁଦ୍ଧି ଦ୍ୱାରା ବଡ଼ ହୋଇପାରିବ ନାହିଁ । ପରିବେଶ ଓ ପରିସ୍ଥିତି ତାକୁ ବଡ଼ କରିପାରିବ । ନ ହେଲେ ନିଜ ଲୋକଙ୍କ ମେଳରେ ଅଦରକାରୀ ହୋଇ ସେ ଶୁଖି ଶୁଖି ମରିଯିବ ।

ରାଧା ବିଦେଶରୁ ଫେରିବା ଚାରିବର୍ଷ ହେଇଗଲାଣି । ଆସିଲା-ବେଳେ ଓଡ଼ିଆ ଲେଖି ପଢ଼ି ଜାଣି ନ ଥିଲା । ସେତିକ ଅଳ୍ପ ଅଳ୍ପ ଶିଖିଗଲାଣି । ତାକୁ ଓଡ଼ିଆ ଜାଣିଥିବା ଲୋକେ ଖୁଣନ୍ତି ଯେ ଓଡ଼ିଆ ହେଇ ସେ ଓଡ଼ିଆ ଜାଣେ ନାହିଁ ।

ସ୍ୱଦେଶରେ ଜନ୍ମ ହୋଇ ସ୍ୱଦେଶରେ ଯେଉଁମାନେ ଅନ୍ୟର ମାତୃଭାଷାକୁ ନିଜର କରିବାର ବାଧ୍ୟତାମୂଳକ ଅସୁବିଧା ଭୋଗି ନାହାନ୍ତି ଓ ବିଦେଶୀଙ୍କୁ ନିଜର କରି ନିଜର ଜନ୍ମରୁ ଦଶଟାରିଶି ବର୍ଷ କଟାଇ ନାହାନ୍ତି ସେହିମାନେ ବହୁତ ବହୁତ ଦେଶ ଓ ଜନ୍ମଭୂମିର ପ୍ରୀତି କଥା କହି ଖୁସି ହୁଅନ୍ତି ।

ତାଙ୍କର ମତ ଅନୁସାରେ ତାଙ୍କର ଚଳିଥିବା ମାଟିଖଣ୍ଡିକୁ ଭଲ ପାଇବା ହେଉଛି ଦେଶପ୍ରୀତି । ନିଜେ ନିଜର ମାତୃଭାଷା କହିବ । ଆଉ ସେଇ ମାତୃଭାଷା କହୁଥିବା ଲୋକଙ୍କୁ ନିଜର କରି ବଞ୍ଚିଥିବ । ତା ହେଲେ ତୁମେ ହେବ ମାଟି ଓ ମା'ର ସଚ୍ଚା ସେବକ ।

ପ୍ରତ୍ୟେକ ମଫସଲିଆ ତାହାର ଗାଁ କୁମାରୀ, ଗାଁ ପୋଖରୀ, ଗାଁ ଠାକୁରାଣୀ ଆଉ ଗାଁର ଓ୍ୱାର୍ଡ଼ମେମ୍ବରକୁ ଦେବଦେବୀ ବୋଲି ଭାବେ । ବି. ଡ଼ି. ଓ. ଓ ସ୍କୁଲ ସବଇନ୍‌ସପେକ୍ଟର ଓ ଥାନାର ହାବିଲଦାର ପାଖରେ ବନ୍ଧୁ ବାନ୍ଧିବା ଅବା ସହି ସଙ୍ଗାତ ହେବାକୁ ନିଜର ପୂର୍ବ-ପୁରୁଷରେ ଗୌରବ ବୋଲି ଭାବେ । ଏଇତକ ହେଲା ଗାଉଁଲୀ ଦର୍ବଳପୁ ସେଇ ଗାଉଁଲୀକୁ ଭଲ କହିବା ହେଉଛି ବୁଦ୍ଧି ।

ଓଡ଼ିଆ ପଢ଼ାଉଥିବା କଲେଜ ଓ ସ୍କୁଲ ମାଷ୍ଟର ନିଜକୁ ସାହିତ୍ୟ-ସେବୀ ବନାଇଲା ପରି ।

ଏଠି ବୁଦ୍ଧି ନ ଥାଏ । ଥାଏ ଦେହ । ଦେହର ଅର୍ଥ ନୁହେଁ ପେଟ, ପିଠି ଓ ପରିସ୍ରାଥଳୀ । ଦେହର ଅର୍ଥ ସଙ୍କୁଚିତ ମନର ସଙ୍କୋଚକୁ ତାରିଫ୍ କରି ଖୁସି ହେବା ଓ ନିଜର ଦାରିଦ୍ର୍ୟକୁ ଧନ ବୋଲି ଭାବିବା ।

ତାଙ୍କର ମତ ଅନୁସାରେ ତାଙ୍କ ପରି ଯେଉଁମାନେ ଝିଙ୍କିକା, ଏଣ୍ଡୁଅ ଓ ଚଟିଆ ନୁହଁନ୍ତି ସେ ସମସ୍ତେ ଅତି ଖରାପ ଲୋକ । ଗାଁ ଭଲ କି ଗାଁର କଅାଁ ଭେଡ଼ ଭଲ । ଏଇ ଭେଡ଼ ହେଉଛି ଚୀନ୍ ଦେଶର ପାଚେରୀ—ପୃଥିବୀର ଗୋଟିଏ ଆଶ୍ଚର୍ଯ୍ୟ ।

କୃଷ୍ଣ ଥିଲି ତାହାର କଅାଁଭେଡ଼ ଘେରିଥିବା ପାଚେରୀ ଭିତରେ । ସଂସାର ଦେଖି ନାହିଁ । ସେ କହେ ଯେ ଭାରତର ବିଭିନ୍ନ ସହରକୁ ସେ ଯାଇଛି । କିନ୍ତୁ ପକେଟରେ ପଇସା ରଖି ରେଳ ଟିକେଟ କାଟି ବଡ଼ ସହରରେ ରଦ୍ଦିମାର୍କା ହୋଟେଲରେ ମାସେ ପନ୍ଦର ଦିନ ରହି ଫେରିବା ଦେଶକୁ ଜାଣିବା ନୁହେଁ ।

ଏଥିରେ ଭ୍ରମଣର ଅନୁଭୂତି ଲେଖା ଯାଇପାରେ । ଗୀତ ନିଶୂନ ହେଲେ ଝିଙ୍କିକା ପଲ ତାଙ୍କର ଗାନ ଶୁଣାଇ ଖୁସି କଲାପରି ଭ୍ରମଣ କାହାଣୀରେ ମନ୍ତ୍ରୀଙ୍କର ମନକୁ ମୁଗ୍ଧ କରା ଯାଇପାରେ । କିନ୍ତୁ ଏଥିରେ ଉଦାର ହୃଦୟ ନ ଥାଏ ଅବା ଏହାଦ୍ୱାରା ମନ ଉଦାର ହୁଏ ନାହିଁ ।

ବିଦେଶରୁ ଝିଅଟିଏ ଆଣି ତାକୁ ଆଦର କରି ନିଜ ଦେଶରେ ରଖିଲେ କଣ୍ଟିଚ୍ଛା ମନର ଅଟକଳ ନେଇହୁଏ । କିନ୍ତୁ ଏଇ ମନକୁ ଆଞ୍ଚଳିକ ସମାଜ ସ୍ୱୀକୃତି ଦେବା କଷ୍ଟକର । ସେଥିପାଇଁ ରାଧା ଆପଣା ଦୁଃଖକୁ ନିଜ ଭିତରେ ସାଇତି କାହାକୁ କାହାକୁ ପଚାରେ—ବାବୁ ଅନ୍ୟ କେଉଁ ମୁଲକରେ ଦି ଚାରି ମାସ ରହିଛନ୍ତି ?

ଉତ୍ତର ଶୁଣେ ଯେ ସେମାନଙ୍କୁ ସେଥିପାଇଁ ବେଳ ମିଳିନାହିଁ । କିନ୍ତୁ ଟ୍ରେନ୍‌ରେ ଲମ୍ବା ଦେଢ଼ହଜାର ଅଢ଼େଇ ହଜାର କିଲୋମିଟର ପାଇଁ ଟିକେଟ କରି ସେ ପୁରା ଦେଶ ଦେଖି ନେଇଛନ୍ତି ।

—ହଁ, ହବ ଆଜ୍ଞା । ବର୍ତ୍ତି ମରୁଡ଼ିକୁ ଦେଶର ବଡ଼ ପାହିଆ ଲୋକେ ଉଡାଜାହାଜରେ ଉଡ଼ି ଠଉରାଇ ନେଉଛନ୍ତି ଆଉ ସେଇଠୁ ଦୁଃଖରେ ସହାନୁଭୂତି ଅଜାଡ଼ି ପକାଉଛନ୍ତି ।

—ଭୁଲ କ'ଣ ?

—କିଛି ଭୁଲ୍ ନାହିଁ । ଉଡାଜାହାଜର ଟଏଲେଟରୁ ବି ମା' ବସୁମତୀ ଉପରେ ଜଳକଣିକା ବର୍ଷା ଯାଇପାରେ ।

ଯିଏ ଯେମିତି ସିଏ ସେମିତି ଦିଏ । ସ୍ୱା'ଙ୍କୁ ମଧ୍ୟ ଠାକୁର ସମର୍ଥନ କରିଛନ୍ତି ଯେ ଗୁଡ଼ାଏ ବେଶି ଦରକାର ନାହିଁ । ଖାଲି ଗଣ୍ଡିର ଶ୍ରଦ୍ଧା ସହିତ ଫଳ, ଫୁଲ ଓ ପାଣି ଆଞ୍ଜୁଳାଏ ଦେଇପାରିଲେ ମୁଁ ଠାକୁର ହେଇ ମଧ୍ୟ ଭାରି ଖୁସି ।

ସମସ୍ତେ ସେତିକ ଧରିନେଇଛନ୍ତି । କୃଷ୍ଣ ସେତିକ ରାଧାଙ୍କୁ ଦେବାକୁ ତିଆରି । ସେ ତାହା ପାଖରେ ବସି ଗପିବ । କିନ୍ତୁ ତାକୁ ଆଉ କିଛି ଦିବ ନାହିଁ ।

ରାଧା ମଧ୍ୟ କୃଷ୍ଣ ଘରୁ ଫେରି ଚୁପ୍ ହେଇ ବସିଗଲା—ଏଇ ଜନ୍ମଭୂମିରେ ଚେତନା ଆସିବାକୁ ଅନେକ ଦିନ ଲାଗିବ ।

ଚେତନା ହେଉଛି ଭିତରରେ ଗଜା ମାରିବା ମଞ୍ଜି । ପ୍ରୀତି ହେଉଛି ଚେତନା । ଅନ୍ୟ ପାଇଁ ନିଜକୁ ପୂରା ବଳିପ୍ର କରିଦେବା ହେଉଛି ଚେତନା । ନିଜ କଥାକୁ ଆଡ଼େଇ ଦେଇ ଅନ୍ୟର ଦୁଃଖରେ କାତର ହେବା ହେଉଛି ଚେତନା ।

ଏଇ ଚେତନାର ଦେହ ନାହିଁ ।

ଏହି ଚେତନାର ଅଛି ମନ ଓ ବୁଦ୍ଧି । ଯେଉଁମାନେ ଦେହ କହିଲେ ନିଖିଳ ବିଶ୍ୱକୁ ବୁଝନ୍ତି ତାଙ୍କ ପାଇଁ ପ୍ରଧାନ ଉପକରଣ ହେଲା ତୃତୀୟ ଶ୍ରେଣୀର ଖଣ୍ଡେ ଟ୍ରକସ୍ ଓ ତୃତୀୟ ଶ୍ରେଣୀର ଗୋଟିଏ ଆଦର୍ଶ । ସେଇଠୁ ସେମାନେ ନିଖିଳ ବିଶ୍ୱ ପାଇଁ ଅନେକ ବାଣୀ ଦେବେ ।

ସାହାବ ଖରାପ । ଭାରତ ସରକାର ଖରାପ । ଓଡ଼ିଶା ସରକାର ଖରାପ । କଲେକ୍ଟର ଖରାପ । ପଡ଼ୋଶୀ ଘର ଭାଇ ଖରାପ । ଅନ୍ୟମାନେ ଏତେ ଖରାପ ଯେ ତାହାର ଦାମିକା କଥା କେଇପଦ କେହି ବୁଝି ପାରୁନାହାନ୍ତି—ନିଜ ଘରେ ବି ବୁଝିଁ ।

ରାଧା ବୁଝିପାରୁଥିଲା ଯେ ଏତିକ ହେଉଛି ସଂସାର । ସମସ୍ତେ ମାଛକୁ ଜଗି ଛନ୍ତି । ନେଇ ଭାଜ ଖାଇବେ । ନ ହେଲେ ସଂସାରର ଗୂଢ଼ତତ୍ତ୍ୱ ଜଣାଇବାକୁ ବଳ ଆସିବ କେଉଁଠୁ ?

ରାଧା ନିଜ ଘରେ କହି ଯାଇଥିଲା ଯେ ସେ ଯାଉଛି କୃଷ୍ଣଙ୍କର ବାପାଙ୍କୁ ଦେଖିବାକୁ । ସେ ଅତ୍ୟନ୍ତ ଅସୁସ୍ଥ ।

ସେମାନେ ଟିକିଏ ଉତ୍କଣ୍ଠାରେ ଥିଲେ । କାରଣ ମଣିଷ କେବେ-ହେଲେ ମଣିଷର ଉତ୍ସାହକୁ ଭଲ ଆଖିରେ ଦେଖେନାହିଁ । ସେ ନିଜଠାରୁ ଉଚା ମଣିଷକୁ କହେ ଡେଙ୍ଗାଟାଏ—ଚିଡ଼ିଗଲେ କହେ ସେ ଡେଙ୍ଗୁନ୍ ।

ନିଜଠାରୁ ବଳୁଆ ଲୋକଙ୍କୁ କହେ ପହଲମାନ ବା ମାଲ୍ । ଚିଡ଼ି ଗଲେ କହେ—ସେ ଗୁଣ୍ଡାଟାଏ ।

ଅନ୍ୟର ଦାନ ଖଇରାତ ଦେଖିଲେ ବିଗିଡ଼ିଯାଇ କହେ—ଦେଖାଇ ହେଉଛି । ଏଇଟା ଶ୍ରୀ ଶ୍ରୀ ଗୀତାରେ ମନା । ଇଏ ହେଲା ତାମସ ଦାନ ।

ରାଧା ଚାଲିଗଲା ପରେ ସମସ୍ତେ ଆସି ଥରକୁ ଥର ଜଗି ଥାନ୍ତି ବାପା ପୁଣି ଆଖି ଖୋଲୁଛନ୍ତି କି ନାହିଁ । କଣ୍ଠ ଖୋଜୁଛନ୍ତି କି ନାହିଁ । ପାଣି ପିଇବେ କି ନାହିଁ ।

—ନା, ବାପା ଶୋଇପଡ଼ିଛନ୍ତି ଥକା ହେଇ । ସିଏ ଆସିଥିଲା ଯେ ନିଶ୍ଚୟ ତାଙ୍କୁ ଟଣାଟଣି କରି ହାଲିଆ କରି ଦେଇଛି । ରୋଗୀ ପାଖକୁ ଡାକ୍ତର ଛଡ଼ା କୌଣସି ବାହାରର ଲୋକ ଆସିବା ଠିକ୍ ନୁହେଁ । ଏଇ ମାଆ ବସି କ'ଣ କରୁଥିଲେ କେଜାଣି—ତାକୁ ଚାଲିଯିବାକୁ କହିଲେ ନାହିଁ ।

—କାହିଁକି କହନ୍ତ ? ତାହାର ଭୁଲ କ'ଣ ?

—ଆହାରେ ବୁଦ୍ଧି ? ଆମେ ଏତେ ଲୋକ ଦିନରାତି ତଆର ଥାଉଁ ଥାଉଁ ବାପାଙ୍କ ଦେହରେ ଅମୃତ ହାତ ବୋଳିବାକୁ ସାଢ଼ୀ ବ୍ଲାଉଜ ପିନ୍ଧି ଆସିଗଲେ । ଦେଖୁନାହିଁ ବାପା ସେତେବେଳୁ କେମିତି ଆଲଜା ଦେଇ ପଡ଼ି ରହିଛନ୍ତି ।

—ଦେହ ଖରାପ ଅଛି ପରା ।

—ହଁ ; ସେଇଥିପାଇଁ ତ ସେ । ଦେହ ଖରାପ ଥିଲାବେଳେ ନିଜ ଲୋକ ଓ ପରଲୋକଙ୍କୁ ଘାରି ବାରେ । ନିଜ ଘରର ପବନ, ନିଜ ଲୋକ-ଙ୍କର ନିଶ୍ୱାସ ଆଉ ପରଲୋକ··· ···। ସବୁକାମ ଏଇ କୃଷ୍ଣ ବାବୁଙ୍କର । ତା'ଙ୍କୁ ଧରିଆଣି ଘରେ ହାଜର ।

—ସେ ମନକୁ ଆସିଥିଲା ।

—ଆଉ ଆପଣ୍ଡା କେମିତି ? ଆମେ ତ କହିନାହୁଁ ଆସିବାକୁ ।

– ନ ଆସିଥିଲେ ଭଲ ହୋଇଥାନ୍ତା ।

—ତାଙ୍କୁ ଖବରଦାର କରିଦବ । ସେ ଆସି ଆମ ବାପାଙ୍କ କଥାରେ ନାକ ଗଳାଇବା ଦରକାର ନାହିଁ ।

ସେ ଆମ ବାପା । ଆମ ବାପାଙ୍କର ଦେହ ଖରାପ ଅଛି । ଆମ ବାପା ଭଲ ନ ହେଲେ ଆମର ପିନା କ୍ଷତି । ସେଥିରେ ସାଧାଦେବା ବାହାର ଆସିଲେଣି—ବାପାଙ୍କୁ ଭଲ କରିବାକୁ ।

ଆମ ବାପାଙ୍କୁ ଆମେ ଭଲପାଉ । ସେ ଆମର ବାପା । ଆମେ ଆମ ବାପାଙ୍କୁ ଭଲ କରିବୁ । ଏଇ ବାହାରର ଲୋକେ ସେଥିରେ ହାତ ନ ଦେବା ଭଲ ।

ଏଇ ଆଇନ ଚାଲିଛି ସାରା ସଂସାରରେ—ମୋର ମହକିଲକୁ ଅନ୍ୟ ଓକିଲ ନେଇ ପାରିବ ନାହିଁ । ମୋର ରୋଗୀକୁ ଅନ୍ୟ ଡାକ୍ତର ନେଇ ପାରିବ ନାହିଁ । ଆମ ଏରିଆରେ ପିକପକେଟିଂ ଅନ୍ୟ ଏରିଆର ଲୋକ କରିପାରିବ ନାହିଁ । ଜେନେରାଲ ପୁଲିସ ଚୋରକୁ ନ ଧରିପାରେ । କିନ୍ତୁ ତା'ଙ୍କୁ କ୍ରିମିନାଲ, ସ୍ପେସାଲ ବ୍ରାଞ୍ଚ ଅବା ସି· ବି· ଆଇ· ଆମର ଅନୁମତି ନ ନେଇ ଧରିବାକୁ କିଏ ?

ଏମିତି ଚାଲିଛି ଆଇନ । ଓଡ଼ିଆ ଲୋକ ଓଡ଼ିଶାରେ ଚାକିରି ପାଇବାକୁ ବାଧ୍ୟ । ଓଡ଼ିଆ ଝିଅକୁ ତୁମେ ବୋହୂ କରିବା ଉଚିତ । ଖାଲି ଖାଇଲାବେଳେ ପଞ୍ଜାବୀ ହୋଟେଲରେ ଆମିଷ ଅବା ମାନ୍ଦ୍ରାସୀ ହୋଟେଲରେ ଟିଫିନ ଖାଇପାର । କିନ୍ତୁ ମୋଟାମୋଟି ସମସ୍ତେ ଆଞ୍ଚଳିକ ଆଇନରେ ଚଳିବ ।

ଓଡ଼ିଆ ଜଜ୍ ଓଡ଼ିଆଙ୍କର ମକଦ୍ଦମା ନିଜଭାଷାରେ ବିଚାର କରିବେ । ଯାଜପୁରରେ ସବଜଜ୍ ଯାଜପୁର ମକଦ୍ଦମା ଯାଜପୁର ଓକିଲଙ୍କ ଜରିଆରେ ଯାଜପୁର ଶୁଣାଣି କରିବ । ଆମ ବାପାଙ୍କର ଝଗଡ଼ା ଆମେ କରିବୁ । ସେଥିରେ ଆସି ବାଧା ପଡ଼ିବାକୁ ଗୋଡ଼ ଟେକିଲାଣି । ବାପାଙ୍କର ଦେହ କଥା ବୁଝି ବୁଝି ଘରକଥା ବୁଝି ବସିବ । ସେଇଠୁ ହେଇଯିବ ଗୋଟିଏ ସରଦାର ଆମ ଉପରେ ହାକିମି ଚଳାଇବ ।

ତେଣେ ବାଧା ଘରେ ସେ ମଧ୍ୟ ତାହାର ଏହି ଅନଧିକାର ପ୍ରବେଶ ପାଇଁ ଭର୍ତ୍ସନା ଶୁଣିଲା । ନିଜର ଇଜ୍ଜତ ଓ ମହତ ବଡ଼କଥା— ସବୁବେଳେ ଓ ସବୁଠାରେ । ସେମାନେ ତାଙ୍କ ଘରେ ତୁମକୁ ପର ଭାବିଲେ ସେଠି ତୁମେ ଚଳପଣି ତାଙ୍କର ନଜର ହେବାକୁ କଏ ?

ଓଡ଼ିଆ ହେଇ ମଧ୍ୟ ଓଡ଼ିଆ ଘରେ ତୁମେ କେହି ନୁହଁ । ପିଆଜ ପରି ଆଞ୍ଚଳିକତା ଓ ଗୋଷ୍ଠି ସ୍ୱାର୍ଥ ପିଆଜ ଚୋପା ପରି ଘେରି ରହିଛି । ପିଆଜ ଖତମ ହେବାଯାଏ ତୁମେ ଏମିତି ଗୋଷ୍ଠି ସ୍ୱାର୍ଥର ଚୋପା ଓ ଖୋଳପା ପାଉଥିବ । ସେଥିପାଇଁ ଠାକୁର ଭୋଗରେ ପିଆଜ ରନ୍ଧା ଯିବା ମନା । ପିଆଜ କହିଲେ ତୁମେ ବୁଝିବା ଉଚିତ ଯେ ସେଇଟା ସଙ୍କୀର୍ଣ୍ଣ ସ୍ୱାର୍ଥର ଫସଲ ।

କିନ୍ତୁ ସ୍ୱାର୍ଥ ନ ଥିଲେ ଦେହରେ ବଳ ଆସନ୍ତା ନାହିଁ । ଜମି ବଢ଼ନ୍ତା ନାହିଁ । ମାଲିମକଦ୍ଦମା ହୁଅନ୍ତା ନାହିଁ । ଲାଞ୍ଚ ମିଛ ଲୁଚିଯାନ୍ତା । ଡାକ୍ତର ସେଇ ଧକାଣେ ତାଗିଦ କରନ୍ତି—ପ୍ରତିଦିନ ପିଆଜ ଖାଇଲେ ଅନେକ ରୋଗ ହେବ ନାହିଁ ।

ଏମିତି ଗୁରିଆଡ଼େ ଗଣ୍ଡଗୋଳ ।

ଗଣ୍ଡଗୋଳ ଘଟେ କଟକ ତୁଳସୀପୁର ଓଡ଼ିଆ ପିଲା ରେଭେନସା କଲେଜରେ ଅନର୍ସ ସିଟ୍ ପାଇ ନ ପାରି ତାହାର ଶାବକ ଖ୍ରୀଷ୍ଟ କଲେଜରେ ନାଁ ଲେଖାଇବାକୁ ଗଲାବେଳେ ।

ପଡ଼ାର ସରଦାରଙ୍କର ହୁକୁମ—ଆମର କଲେଜର ପିଲା ଅଳ୍ପ ନମ୍ବର ରଖିଥିଲେ ବି ଆଗ ଆଡ଼ମିସନ ନେବେ । ସେଥିରେ ଓଡ଼ିଆ

ଅବା ଚଢ଼ା ଓଡ଼ିଆ କ କଲେଜ ପାଖ ଓଡ଼ିଆ ପିଲାର ସ୍ଥାନ ନାହିଁ । ସବୁଠାରେ "ଆମ ବାପା ସମସ୍ୟା" ।

ଆଞ୍ଚଳିକତା ଆମର ପ୍ରାଣବାୟୁ । ଯେତେ ଦୁର୍ଗନ୍ଧ ହେଲେ ମଧ୍ୟ ବୋରଝାଞ୍ଜି ଘେରା ହୋଇଥିବା ପାଣି ଉପରର ପବନକୁ ଆମେ ଶୁଙ୍ଘି-ବାକୁ ରାଜି ନ ହେଲେ କ ଆପତ୍ତି ଜଣାଇଲେ ଆମକୁ ଦେଶଦ୍ରୋହୀ କୁହାଯିବ । କାରଣ ନିଜର ଅଞ୍ଚଳର ଗନ୍ଧକୁ ଆମେ ସୁବାସ ବୋଲି କହିଲୁ ନାହିଁ ।

କୃଷ୍ଣର ମନଟା ରାଧା ପ୍ରତି ସହାନୁଭୂତିରେ ଭରିଗଲା । ଆହା ସେ ଆସିଥିଲା ମନର ଟିକେ ପାଇଁ । ନିଜର ବାପାଙ୍କୁ ସେ ରୋଗରେ ମରିବାର ଦେଖିଥିବାରୁ କୃଷ୍ଣର ବାପାଙ୍କ ପ୍ରତି ସହାନୁଭୂତି ଆସିଥିଲା । ଅନୁଭବ ହେଉଛି ମନର ମୂଳ ।

ବହି ପାଠରୁ ଅନୁଭବ ଅଳ୍ପ ହୁଏ । ଦେଖିଲେ ଶୁଣିଲେ ମଧ୍ୟ ସେତେ ଅନୁଭବ ଆସେ ନାହିଁ । ନିଜେ ଭୋଗିଲେ କଥାଟା ପକ୍କା ହୁଏ । ସେଇଠି ମନ ତାହାର ବାଟ ଧରେ । ବୁଦ୍ଧି ଆସି ମନକୁ ଚଳାଏ ।

ଅନୁଭବ ନ ହେବା ଯାଏ ମଣିଷ ହେଉଛି ଖାଲି ଗୋଟାଏ ଦେହ—ଦଶଟା ଅଙ୍ଗ ପ୍ରତ୍ୟଙ୍ଗର ଦେହ । ସେ କିଛି ବୁଝେ ନାହିଁ । ତାହାର ମନ ନିଦରେ ଶୋଇଥାଏ । ବୁଦ୍ଧି ସେଠି ବସି ତାକୁ ଜଗି ରହିଥାଏ ।

କୃଷ୍ଣ ଆସି ପହଞ୍ଚିଲା ।

—ତୁମ ଘରେ କ'ଣ କହିଲେ ମୋ ଯିବା କଥା ।

—ଘର ବିଗିଡ଼ିଲେ । ସେମାନେ ତାଙ୍କର ବାପାଙ୍କ କଥା ଏକା ବୁଝିବେ ।

—ଆମେ କ'ଣ ପରର ବୁଝିବାକୁ ହକଦାର ନୋହୁଁ ?

—ହୋଇପାର । କିନ୍ତୁ ତୁମେ ଯଦି ଆମ ଘରେ ମଞ୍ଜୁର ନନେଇ ପଶିବ ତେବେ ସେମାନେ ଆପତ୍ତି କରିବାକୁ ଅବଶ୍ୟ ଦାବିଦାର ।

—ତୁମେ କ'ଣ କହିଲ ?

—ମୁଁ ଡରିଗଲି । ଚୁପ୍ ରହିଲି ।

—ମୋର ମାନ ମହତ ପାଇଁ ପଦେ କହି ପାରିଲ ନାହିଁ ?

—ନା, ମୁଁ ଘର ଡରୁଆ ।

—ଡରୁଆ ନୁହେଁ ଯେ ମାଇଚିଆ ।

—ଯାହା କହିପାର ।

—ବିରକ୍ତ ହେବ ନାହିଁ । ଯେଉଁ ପୁରୁଷମାନେ ତୁମ ପରି ଉଆଜିବ କଥା କହିବାକୁ ରାଜି ନୁହଁନ୍ତି ସେମାନଙ୍କ ପାଇଁ ଉଚିତ ଯାଗା ବୋଷେଇ ଘରେ । ଏବେ ତୁମ ପରି ନା-ମରଦା ବହୁତ ବଢ଼ୁଛନ୍ତି ।

—ବିରକ୍ତ ହେବା କଥା ।

—ନିଜ ପାଇଁ ନୁହେଁ । ଏଠିକି ଆସିବାର ଶହେ ବର୍ଷ ହେଇ-ଗଲାଣି । ଅନେକ କଥା ଦେଖିଲେଣି ।

—କି କଥା ?

—ଏଠି ସମସ୍ତେ ଶୋଇଯାନ୍ତି ସବୁ ବେଳେ । ସକାଳେ ଉଠନ୍ତି ଡେରିରେ । ଖାଇଦେବା ପରେ ଶୋଇଯାନ୍ତି ନିଘୋଡ଼ ନିଦରେ । ବର୍ଷା ହେଲେ ଶୁଅନ୍ତି । ଖରା କାଟିଲେ ଶୁଅନ୍ତି । ଶୀତ ହେଲେ ଶୁଅନ୍ତି । ସେଥି-ପାଇଁ ଅନ୍ୟ କିଛି କଥାକୁ ଏଠି ପରବାଏ ନ ଥାଏ ।

—ମୁଁ ଶୁଏ ନାହିଁ ।

—ସେଇଟା ଠିକ୍ । ନ ହେଲେ ଘରେ ପାଟି ବନ୍ଦ କରି ଏଠି ଆସି ତର୍ଜମା ଦଅନ୍ତି କାହିଁକି ? ତେବେ ମନେ ରଖିବ ଯେ ମୁଁ ତୁମର ବାପାଙ୍କୁ ଭଲ ପାଏ । ସେ ମୋର ବାପା ।

କୃଷ୍ଣ ଶୁଣିଲି ରାଧା ଆଡ଼େ । ଘର ଚେଙ୍ଗା । ଆମର ଏଠା ପାଣି ପବନରେ ଭଲ କରି ଗମି ନାହିଁ ବୋଲି ବୁଝି ନାହିଁ ଯେ ଏଠି ସବୁ ବେଳେ କର୍ମ ଚିସନ ଚାଲିଛି—ଖାଇବା, ଶୋଇବା ଓ ଦେଖେଇହବା ବିଷୟରେ ।

ସେଥିରେ ଖରାପ କିଛି ହୋଇନାହିଁ । ଏହି କାମଗୁଡ଼ିକ ହରଦମ୍ ଚାଲିଥିବାରୁ ଓଡ଼ିଶାରୁ ବେକାର ଶବ୍ଦ ଉଠିଯାଇଛି । ସାରା ଭାରତ ଓ ସାରା ପୃଥିବୀରେ ବେକାର ଭରି ରହିଛନ୍ତି—କେବଳ ଓଡ଼ିଶାକୁ ଛାଡ଼ି ।

ବେକାର ଅର୍ଥ ମନ କାମ ନ ପାଇବା । ବେକାର ଅର୍ଥ ବୁଦ୍ଧିକୁ କିଛି କାମ ନ ମିଳିବା । ଏସବୁ ହେଲେ ମଣିଷର ମନ ଖରାପ ହେବ ବୋଲି ଆମେ ଚେଲଲଗା ଓ ଗାଧୁଆକୁ ଦେଢ଼ ଘଣ୍ଟା ଓ ପୂଜାକୁ ଦେଢ଼ ଘଣ୍ଟା ଆଉ ଖାଇବାକୁ ଘଣ୍ଟାଏ କରି ଦିନର ଅଧିକାଂଶ ସମୟ ଉଚିତ ପ୍ରକାରରେ କଟାଇ ଦେଉଛୁ ।

ଇଏ ହେଉଛି ମନୁଷ୍ୟର ବୁଦ୍ଧିର ସୂକ୍ଷ୍ମ ଅର୍ଥ । ଏପରି ଭାବରେ ରୁଟିନ ବାନ୍ଧିବ ଯେପରି ତୁମକୁ ସମୟ ବଳିବ ନାହିଁ । ସମୟ ବଳିଲେ ଦୁଇ ତିନ ତଳ ଠାକୁର । ପଥର, ଫଟୋ ଥୋଇ ପାଟି ପାକୁ ପାକୁ କରୁଥିବ । ଏଡ଼େ ମଜାରେ ସମୟ କଟିଯିବ ଯେ ତୁମେ ଅଫିସ ପାଇଁ ଲେଟ୍ ହବ ଓ ସବୁ କାମକୁ ପଛେଇ ଯିବ । ଦିନ ରାତି ସବୁବେଳେ ଅଣନିଶ୍ୱାସୀ ହୋଇ ଧାଉଁଥିବ ।

ବେକାର କଟାଇବାର ସହଜ ଉପାୟ ହେଲା ଯେ ମନକୁ ଶୋଇ ରଖିବା ଓ ବୁଦ୍ଧି ସାଙ୍ଗରେ ନ ଲାଗି ଦେହ ସାଙ୍ଗରେ ଲାଗିବା ।

ତାହାହେଲେ ଦେହ ହୋଇଯିବ ମାଲିକ । ସେ ହରିଜନ ବା ଆଦିବାସୀ ବା ପଛୁଆ ଜାତି ଯେମିତି ହେଉ ପଛକେ ସେ ଚଳାଇଲେ ବେକାର ହଟିବ ।

ଆଉ ଏଇ ଦେହ ଖୋଜେ ଅପରର ଦେହର ସଙ୍ଗ । ଯାକୁ ଆମେ କହୁ ପ୍ରୀତି । ଏଇ ପ୍ରୀତି ସବୁ ପ୍ରକାରର ଓଲୁ ଓ ଅସମର୍ଥ ଭିତରେ ମଧ୍ୟ ସମ୍ଭବ । ଭକାଣ୍ଡ ଓ ଅଳ୍ପ ବୁଝିବା ଲୋକଙ୍କ ମଧ୍ୟରେ ସ୍ୱାଭାବିକ । ତେଣୁ ସଂସାରଟା ଚାଲେ । କାରଣ ଏଇ ସଂସାରରେ ବୁଝିବା ଲୋକ ଦଶ କୋଡ଼ିଏ ଜଣରେ ଜଣେ ।

ଯେଉଁମାନେ ବିଦ୍ୟା, ଧନ, ପ୍ରତିପତ୍ତି ଓ ପରାକ୍ରମର ଅଧିକାରୀ ତାଙ୍କ ଭିତରେ ସେମାନେ ସ୍ତ୍ରୀ ବା ପୁରୁଷ ଯାହା ହୋଇଥାନ୍ତୁ ନା କାହିଁକି

ପ୍ରୀତିର ଲକ୍ଷଣ ମିଳେ ନାହିଁ । ଥିଲାବାଲାର ପ୍ରତ୍ୟେକ ହୃଦୟରେ ଥାଏ ତେଣୁ ପ୍ରୀତି ସେଠି ଅଳ୍ପ । କାରଣ ପ୍ରୀତି ହେଉଛି ଅନାପର ଲୋକଙ୍କର ଏକମାତ୍ର ଆନନ୍ଦ ।

ବାପାଙ୍କର ଦେହ ଖବର କୃଷ୍ଣ ରାଧାକୁ ପ୍ରତିଦିନ ଦେବାର କଥା କୃଷ୍ଣ ଆସୁଥିଲା କହିବାକୁ ଯେ ଅବସ୍ଥା ଖରାପ ଆଡ଼କୁ ଯାଉଛି । ଶେଷରେ ଖରାପର ଶେଷ ହେଲା ।

କୃଷ୍ଣ ଆସିବା ଆଗରୁ ରାଧା ବାପାଙ୍କୁ ଦେଖିଥିଲା । ସେ ଦିନ ସକାଳେ ମେଘ ହେଉଥିଲା—ଶ୍ରାବଣ ଶେଷର ମେଘ । ସେତିକବେଳେ ଜଣେ ଲୋକ ଆସି ରାଧା ଦୁଆରେ ଠିଆ ହୋଇଗଲେ । ଦେହରୁ ବର୍ଷା କୋଟ ଉପରୁ ପାଣି ବୋହୁଥାଏ । ରାଧାର ସେତେବେଳେ ଆଜ ମନେ ନାହିଁ ଯେ କୃଷ୍ଣଙ୍କର ବାପା ଜଣେ ଯନ୍ତ୍ରଣାର ରୋଗୀ ।

ସେଇ ଅଦ୍‌ଭୁତ ଲୋକଟି ଅଦୃଶ୍ୟ ହୋଇଗଲା ପରେ ରାଧାର ମନେ ପଡ଼ିଲା । ଆଜ ସେ ଜାଣିଲା ଯେ କୃଷ୍ଣର ବାପା ସେଇ ସକାଳ ପ୍ରହରରେ ଘର ବିଦାୟ ନେଇଗଲେ । କିନ୍ତୁ ପକ୍‌କା ଖବର ନ ମିଳିଲେ ସେ ସେଦିନ ବର୍ଷାରେ ଯିବ କେମିତି ?

ଲୋକାଚାରର ସବୁବେଳେ ବଡ଼ କଥା ।

ଘଣ୍ଟାକ ପରେ କୃଷ୍ଣ ଆସି ପହଞ୍ଚିଲା ଖବର ଦେବାକୁ । ଖବର ଦେବାଠାରୁ ଅଧିକ ଦରକାର ଥିଲା ସାହାଯ୍ୟର ଯୋଗାଡ଼ । କାରଣ କୃଷ୍ଣର ଜୀବନରେ ସେଇଟି ପ୍ରଥମ ମରଣର ଘଟଣା ।

ମରଣ ଦେଖି ନ ଥିଲା । ମରଣ ପରେ କ'ଣ କରିବା ଦରକାର ସେତିକ ସମ୍ପୂର୍ଣ୍ଣ ଅଜଣା ।

ବହୁତ ବର୍ଷ ପରେ କୃଷ୍ଣର ବାପା ନିଜର ଗାଁ ଛାଡ଼ି ଚାଲି ଆସିଥିଲେ । ପଚିଶ ବର୍ଷକୁ ଧକ୍‌କା ମାରିଲାଣି । ସେ ଆଉ ଗାଁ ସହିତ ସମ୍ବନ୍ଧ ରଖି ନ ଥିଲେ । ଆଉ ରହିବା ଜାଗାରେ ମଧ୍ୟ ଏହିସବୁ ପରି-ସ୍ଥିତି ପାଇଁ କିଛି ବ୍ୟବସ୍ଥା କରି ନ ଥିଲେ ।

ଅବିକଳ ବିଦେଶୀର ବିଦେଶରେ ଘଟୁଥିବା ସମାନ ଅବସ୍ଥା । ଖାଲି ଫରକ ହେଉଛି ମାତୃଭାଷା ।

ଓଡ଼ିଆ ମୁଲକରେ ଜଣେ ବନ୍ଧୁବାନ୍ଧବହୀନ ଓଡ଼ିଆ ମରିବା ଯାହା ଅଣଓଡ଼ିଆ ମୁଲକରେ ଜଣେ ଓଡ଼ିଆ ମରିବା ମଧ୍ୟ ଠିକ୍ ସେଇଆ ।

ଅଳ୍ପ କେଇଜଣ ନିଜର ଲୋକଙ୍କୁ ଖବର ଦେବା କଥା—ଦୟା ହେଲା । କିନ୍ତୁ ଅନ୍ୟ ପକ୍ଷରେ ଆଗ୍ରହ ମଧ୍ୟ କମ୍ । ଏଣେ ଅନୁଭବ ନ ଥିବାରୁ ସମସ୍ତେ ଠିକ୍ କରି ନେଇଥାନ୍ତି ଯେ ଆପଣାଛାଏଁ ସାମନା ନଈର ପାଣି ଭଉଁରୀ କାଟି ତଳକୁ ଗଡ଼ି ଗଲାପରି ଗୋଟିଏ ମୃତଦେହ ସ୍ୱାଭାବିକ ଉପାୟରେ ମଶାଣିଯାଏ ଚାଲିଯିବ ।

ସହରର ଏକୁଟିଆ ଜୀବନର ଏଇଟି ଗୋଟାଏ ନିଷ୍ଠୁର ପରିହାସ ଯେ ସମାଜ ନ ଗଢ଼ି ସମାଜ ଅଛି ବୋଲି ଭାବିବା ବୁଦ୍ଧିମାନର କାମ ନୁହେଁ ।

ଆଜି ସମାଜ ଗଢ଼ା ହେଇଥାଏ ପରସ୍ପର ନିର୍ଭରଶୀଳତା ଉପରେ । ଏଥିରେ ଥାଏ ଦିଆ ଓ ନିଆ । ସ୍ନେହ ଓ ଶତ୍ରୁତା । ଶେଷରେ ଥାଏ ଲୋକବଳ—ଅନ୍ତତ ପାଞ୍ଚ ଛଅ ଜଣ ବଳୁଆ ଲୋକ ଥିବେ । ନ ହେଲେ ମଶାଣିଯାଏ କାନ୍ଧେଇବ କିଏ ?

ରାଧା ଅଳ୍ପରେ କହିଦେଲେ ଯେ କୃଷ୍ଣଙ୍କର ବାପା ମରିବାର ଖବର ସେ ନିଜେ ଆସି ଅଳ୍ପ ସମୟ ଆଗରୁ ରାଧାକୁ ଜଣେଇ ଦେଲେ ।

କୃଷ୍ଣ କିଛି କହିଲା ନାହିଁ । ରାଧା ସତ କହୁନାହିଁ ବୋଲି ଭାବିଲା । ତାଙ୍କ ବାପା ମରିବା ପରେ ରାଧାକୁ ସେଇ ଖବର ଜଣାଇବାର କିଛି କାରଣ ନ ରହିବା କଥା ।

ଯେତେହେଲେ ବି ଆମ ବାପା ରାଧାକୁ କାହିଁକି କହିବେ ? ଯେଉଁମାନେ ମରଣ ବିଷୟରେ ଅଳ୍ପ ଜାଣନ୍ତି ତାଙ୍କର ମତ ଯେ ଏଇସବୁ ହେଉଛି ମନଗଢ଼ା କଥା ।

କିନ୍ତୁ ସଂସାର ଚାଲିଛି ମନଗଢ଼ା କଥାରେ । ନିଜର ଓ ପରର ସମ୍ବନ୍ଧ ଏହି ମନଗଢ଼ା କଥା ଉପରେ । ଏହି ଉପରେ ଠିଆ ହୋଇଛି

ପ୍ରତ୍ୟେକର ପରିବାର—ବାପା, ଅଜା, ପୁଅ, ନାତି, ସ୍ୱାମୀ, ସ୍ତ୍ରୀ ଓ ବନ୍ଧୁବାନ୍ଧବ ।

କେହି କାହାର ନୁହନ୍ତି । କିନ୍ତୁ ସମସ୍ତେ ସମସ୍ତଙ୍କର । ଏଇତକ ଭଲକରି ବୁଝିବାର ସାମର୍ଥ୍ୟ ହେଉଛି ଜ୍ଞାନ ।

ଆକାଶର ଚନ୍ଦ୍ର ଓ ସୂର୍ଯ୍ୟ କଇଁଫୁଲ ଓ ପଦ୍ମଫୁଲ ସହିତ ସମ୍ବନ୍ଧ ରଖନ୍ତି । ଅଜଗର ସାପର ପାଟି ପାଖକୁ ଜୀବଜନ୍ତୁ ଆସନ୍ତି । ବିଦେଶର ଚଢ଼େଇ ଗୁଡ଼ା ବି ଚାଲିଆସେ କୃଷ୍ଣର ବିଲର ଭିତରକୁ ।

ଏଥିରେ ଦୋଷ ଗୁଣ, ବାଛବିଚାର ଓ ବାଛବଛି ନ ଥାଏ । ଦଶ ପନ୍ଦର କୋଶରୁ କୁମ୍ଭୀର ପହଁରି ଚାଲିଆସେ, ବାଘ ଡେଇଁ ଡେଇଁ ଆସେ ଗୋଟିଏ ମଣିଷକୁ ଖାଇବାକୁ । ଖାଇଦେଇ ଚାଲିଯାଏ ।

କାକତାଳୀୟ ହେଉ ଅବା ବୁଦ୍ଧିବିଚାର ହେଉ—ମଣିଷର ସମ୍ବନ୍ଧକୁ ମଣିଷ ଗଢ଼େ ନାହିଁ । ସେଇଟା ଆଗରୁ ଗଢ଼ାହୋଇ ରହିଥାଏ । ପ୍ରତ୍ୟେକ ମଣିଷ ପାଇଁ ତାହାର ଖାଦ୍ୟ, ରୋଜଗାର, ବନ୍ଧୁ ସଖା, ଶତ୍ରୁ ବିରୋଧୀ ଓ ଜନ୍ମ ମରଣ ରହିଥାଏ । ଏହାକୁ ମାନିବା ଅର୍ଥ ଧର୍ମ ।

ଧର୍ମକୁ ମାନିବା ଅର୍ଥ ଈଶ୍ୱର ।

ଆଉ ଏଇ ଈଶ୍ୱରଙ୍କ ଅସୀମ କରୁଣାରୁ ବଣବୁଦାର ପାଟି ମାଙ୍କଡ଼ଟିଏ ପୋଷାମାନି ଗୋଟିଏ ମଣିଷର ପରିବାରକୁ ଦାନା ଜୁଟାଏ । ସେମିତି ଗାତ ଓ ହୁଙ୍କାର ନାଗ ସାପଟିଏ ପୋଷା ହୋଇ ଗୋଟିଏ ସାପୁଆର ପରିବାରକୁ ଚଳାଏ । ସେମିତି ଚଳାନ୍ତି ସମସ୍ତେ ।

ଠକ, ଖୁଣୀ, ଡକେଇତ, ଭଲ ଓ ଖରାପ ଲୋକ ମିଶି ସଂସାରକୁ ଚଳାନ୍ତି ଓ ସଂସାରକୁ ଗଢ଼ନ୍ତି । ସେମାନେ ଆସିଥାଆନ୍ତି ଅସଲ ବେଳରେ କିଛି ଟିକିଏ କାମ କରିଦେଇ ଚାଲିଯିବା ପାଇଁ ।

ଅଳ୍ପ ସମୟ ପରେ ଗୁଡ଼ା ପଶୁଥିଲା—ଶବ ସତ୍କାର କଥା ।

—ଖବର ଦେବାକୁ ହେବ । ବେଶି କେହି ଆମର ନାହାନ୍ତି । ସାହି ପଡ଼ିଶା କହିଲେ ସହରରେ କିଛି ଅର୍ଥ ହୁଏ ନାହିଁ । ସେମାନଙ୍କୁ ଜଣାଇବାର କିଛି ନାହିଁ । ତେବେ ଗୋଟିଏ ପୁରୋହିତ ଦରକାର ।

—ତମର କିଏ ଠାକୁର ପୂଜା କରନ୍ତି ?

—କେହି ନାହିଁ । ଆମର ଆମେ ନିଜେ ନିଜେ ଠାକୁର ପୂଜା କରୁ । ଲଣ୍ଡ୍ରିରେ ଲୁଗା କାଚନେଉ । ସେଲୁନ୍‌ରେ ବାଳ କଟାଇ ନେଇ ସବୁଠାରେ ଦିଆ-ନିଆର ସମ୍ବନ୍ଧ । ଏସବୁ ଅସମୟ ପାଇଁ କିଛି ବ୍ୟବସ୍ଥା ନାହିଁ ।

—ଇଏତ ସାଧାରଣ କଥା । ମତେ ଏଇ ଅସୁବିଧା ଭୋଗିବାକୁ ପଡ଼ିଥିଲା ବିଦେଶରେ । ସେଠୁ ଖବର ଦେଲେ ବି ଏଠୁ ଆମ ଲୋକ ଯିବାକୁ ତିନି ଦିନ । ସେଥିରେ ପୁଣି ଖର୍ଚ୍ଚର ଅସୁବିଧା ଓ ଯିବାଲୋକର ସୁବିଧା ଅସୁବିଧା ଅଛି ।

—ଆଚ୍ଛା, ତୁମେ ଯାଅ । ଯାହାକୁ ଖବର ଦେବାର ଦେଇ ଯାହା ବ୍ୟବସ୍ଥା କରିବାର କର । ମୁଁ ଏଠୁ ଗୋଟାଏ କାମର ଚଟା ଓ ଫୁଲ ପଠାଉଛି । ତୁମେ ଏସବୁ ଯୋଗାଡ଼ କରିପାରିବ ନାହିଁ ।

—ନା ।

—ତେବେ ତୁମ ଘରକୁ ଆଜି ମୁଁ ଯିବି ନାହିଁ । ତୁମର ଲୋକ ମାନେ ମତେ ଖରାପ ବୁଝିବେ । ତୁମେ ନିଜେ ବି ପସନ୍ଦ କରି ନ ପାର । ଆମ ଘରେ ମଧ୍ୟ ସମସ୍ତେ କହିବେ ଯେ ବାହାର ଝିଅଟିଏ ଆସିଛି କ'ଣ ପାଇଁ ?

—ଯାହା ଯେମିତି ଭଲ ଭାବିବ ।

—ଭାବିବାର କିଛି ନାହିଁ । ଭାବନା ତାଙ୍କୁ ସଂସାର ଖୁଣେ । ସଂସାର ଗୁହେଁ ଯେ ସମସ୍ତେ ଦେହ କଥା ବୁଝି ଚଳିବେ । ସେଥିରେ ମନ ଓ ବୁଦ୍ଧିକୁ କାମରେ ଲଗାଇବେ ନାହିଁ ।

ମନ ଓ ବୁଦ୍ଧି ହେଉଛି ସଂସାର ଶତ୍ରୁ । ତାଙ୍କର ପାଇଁ ସଂସାର ମୋଡ଼ ନିଏ । ଏଇ ମୋଡ଼ ନେବାକୁ କେହି ଭଲ ପାଆନ୍ତି ନାହିଁ । ସେଥି ପାଇଁ ମଣିଷ ମଧ୍ୟ ଆକାଶର ଅନ୍ଧାରପକ୍ଷ ଉପରେ ବିରକ୍ତ ହୁଏ । ସେ ଖୋଜେ ଫୁଲ—କଣ୍ଟାକୁ ବିରକ୍ତ ହୁଏ ।

କୃଷ୍ଣ ଘରକୁ ଫେରି ଆସିଲା ! ସମସ୍ତେ କନ୍ଦାକଟାରେ ଲାଗିଛନ୍ତି । ଏଇଟା ବହୁତ ଦରକାର ସମସ୍ତଙ୍କ ପାଇଁ । ଏଇଥିରୁ ଭଲପାଇବାର ମାପ ମିଳେ ।

ଚଳୁଆ ସମାଜରେ ସହାନୁଭୂତିର ଅର୍ଥ ହେଉଛି କାନ୍ଦଣା । ଈଶ୍ୱର ବିଶ୍ୱାସର ଅର୍ଥ ହେଉଛି ଭୂଇଁରେ ଗଡ଼ିଯାଇ ବହେ ବାହୁନି ହେବା । ବଳ ସାହାସ ଧୈର୍ଯ୍ୟ କହିଲେ ସମସ୍ତେ ବିଗିଡ଼ିଯାନ୍ତି । ତାଙ୍କର ମତରେ ଯାହାର ବଳ ଅଛି, ତାହାର କରୁଣା ନାହିଁ । ଯିଏ ନିଜ ଉପରେ ହିମତ ରଖେ ସେ ଈଶ୍ୱରଙ୍କୁ ଖାତିର କରିପାରେ ନାହିଁ ।

ଘରକୁ କିଛି ଫୁଲ ଓ ମଶାଣି ପାଇଁ ଦରକାର ହେଉଥିବା ଜିନିଷ ଜଣେ ପୁରୋହିତ ତାଙ୍କର ସାଙ୍ଗରେ ଜଣେ ଲୋକ ନେଇ ଆସି ପହଞ୍ଚିଲେ । ସେତେବେଳେ ବାପାଙ୍କ ଶବ ପାଖରେ ଘେରି ସମସ୍ତେ ରହିଥାନ୍ତି ।

ସହାନୁଭୂତି ବା କାନ୍ଦଣାରେ ଶବସତ୍କାର ହୁଏ ନାହିଁ । ଇଏ ଗୋଟାଏ ସାଧାରଣ କଥା ହେଲେ ବି ସମସ୍ତେ ଏହାକୁ ଜାଣନ୍ତି ନାହିଁ ଓ ଜାଣିଲେ ବି ବୁଝନ୍ତି ନାହିଁ । ନିଜ ନିଜ ଭିତରେ କୁହାକୁହି ହୁଅନ୍ତି ଯେ କେଉଁଠି ହେଲେ ଶବ ପଡ଼ି ରହେନାହିଁ । ଆପଣା ଛାଏଁ ସତ୍କାର ହୋଇଯାଏ ।

ଏମିତି ଚାଲିଛି ସଂସାର—ବୋହି ଯାଉଥିବା ନଈର ପାଣିଧାର ପରି । ମଣିଷ ଜନ୍ମ ହୁଏ । ମଣିଷ ମରେ । ଜନ୍ମ ହେଲାବେଳେ ହୁଏତ ମାଆ ମରିପାରେ । କିନ୍ତୁ ମଲାବେଳକୁ ଜଣେ ମରେ । କେହି ଜନ୍ମ ହୁଏ ନାହିଁ ।

ଯଦି କିଛି ମରଣରୁ ଜନ୍ମ ନିଏ, ସେତିକ ହେଲା ମଣିଷର ଅନୁଭବ । ସେଇ ମରଣରୁ ସେ ବୁଝେ ନିଜ ଓ ପର ଭିତରେ ଥିବା ଫରକ । ଆଖିରେ ଆଖି ମିଳାଇ କାନ୍ଦିଲେ ମଣିଷ ନଜର ହୋଇପାରେ । କିନ୍ତୁ ସେଥିରେ କିଛି କାମ ହୁଏ ନାହିଁ ।

ସେଥିପାଇଁ ପ୍ରତ୍ୟେକ ବିଶ୍ୱରବାନ୍ ଲୋକ ଦଶ ପନ୍ଦର ଜଣ ଲୋକଙ୍କୁ ନଜର କରି ରଖିଥିବା ଦରକାର । ଭଲ ମନ୍ଦରେ ଆସି ଠିଆ ହେବେ ଓ କାନ୍ଧ ମିଳାଇବେ ।

ସହରର ସଭ୍ୟତା ଏଇ ଦୃଶ୍ୟକୁ ଅତ୍ୟନ୍ତ ଖୋଲଖୋଲ ଦେଖାଇ ଦେଉଛି । ଖାଲି ଟଙ୍କା ଆଣି ପେଟ ବା ପରିବାରକୁ ଚଳାଇଲେ ସବୁ କାମ ଛୁଟେନି ନାହିଁ । କିନ୍ତୁ ହୃଦୟବାନ୍ ଲୋକଙ୍କର ବନ୍ଧୁତା ରଖିବା ଦରକାର ।

କିନ୍ତୁ ହୃଦୟ ରହୁଛି କେତେ ଜଣଙ୍କର ? ଯଦି ବା ହୃଦୟ ଅଛି, ସେଇଟା ନିଜର ସ୍ୱାର୍ଥର ପରିସର ବାହାରେ କାମିକା ହେବା ପାଇଁ, ଟେନ୍‌ସନ୍ ପାଇ ପାରୁନାହିଁ । ଖାଲି ଦାନ୍ତଦେଖା ହସରେ ସଂସାର ଚାଲେ ନାହିଁ । ଅବା ସମସ୍ତଙ୍କ ଉପରେ ସବୁବେଳେ ଟିପ୍ପଣୀ କାଟି ବୁଦ୍ଧିଆ ବନିଲେ ସଂସାର ଚାଲେ ନାହିଁ ।

କୃଷ୍ଣ ଖୁବ୍ ବୁଦ୍ଧିଆ ହୋଇଥିଲା । କାରଣ ପ୍ରତ୍ୟେକ ବିଷୟରେ ସେ ମତାମତ ଦେଇପାରେ । କୃଷ୍ଣର ଘରଲୋକେ ବୁଦ୍ଧିଆ ହୋଇଥିଲେ । କାରଣ ପ୍ରତ୍ୟେକ ବିଷୟରେ ତାଙ୍କର ମତାମତ ଥିଲା । କିନ୍ତୁ ଏହି ଜ୍ଞାନକୁ ବନ୍ଧୁଭାବ କୁହାଯାଏ ନାହିଁ । ବନ୍ଧୁଭାବ ନ ଥିଲେ ସଂସାର ଚାଲେ ନାହିଁ ।

ବାପାଙ୍କର ଶବ ସତ୍କାର ହେଲା । କୃଷ୍ଣ ମୁଖାଗ୍ନି ଦେଲା । ଅତ୍ୟନ୍ତ କ୍ଳାନ୍ତ ହୋଇ ସେ ବହୁତ ସିଗାରେଟ୍ ଲଗାଉଥିଲା । ଜଣେ ଶୁଭାକାଂକ୍ଷୀ ଶୁଣାଇଦେଲେ ଯେ ଶବ ପାଖରେ ଧୂଆଁ ଟାଣିବା ଠିକ୍ ନୁହେଁ ।

ଜୀବନ ଚାଲି ଯାଇଥିବା ଶବ ପାଖରେ କିଛି ଆଚାର ଓ ଶିଷ୍ଟାଚାର ଥାଇପାରେ ସେତିକ କୃଷ୍ଣ ଜାଣି ନ ଥିଲା । ସାଙ୍ଗରେ ଥିବା ଅନେକ ଲୋକ ଜାଣି ନ ଥିଲେ ।

ଏ ସବୁ ଜାଣିଥିବା ଦରକାର । ଏହି ଜ୍ଞାନ ବା କାଣ୍ଡଜ୍ଞାନ ନ ଥାଇ ବୁଦ୍ଧିଆ ବୋଲାଇବା ମୂର୍ଖତା ।

ସବୁ ସହରରେ ଏହି ପ୍ରକାରର ଓଲୁ ସଂଖ୍ୟା ବଢ଼ି ବଢ଼ି ଚାଲିଛି ବୋଲି ରାଧା ଥରେ କହିଲା । ସେତେବେଳେ ଚଳଖଚଳର କଥା ପଡ଼ିଥିଲା । ରାଧା କହିଲା ।

—ଚାଲାଖ ଚତୁର ହେଲେ ସଂସାର ଚାଲେ ନାହିଁ । ନିଜର ଚଳିବା ପାଇଁ ଚାଲାଖ ହେବା ବଦଳରେ ବୋକା ହେବା ଭଲ ।

—କ'ଣ ବୋକା ହବା ?

—ହଁ । ବୋକା ନ ହେଲେ ଏଇ ସଂସାରରେ କେହି ଆଗେଇ ପାରେ ନାହିଁ । ସମସ୍ତେ ବୋକାକୁ ତାରିଫ କରନ୍ତି ।

—ଏଁ, ବୋକାକୁ ?

—ହଁ, ବୋକା ହେଉଛି ମାଟି । ବୁଦ୍ଧି ଓ ମନ ହେଲେ ଆକାଶ । ମାଟିରେ ଆମର କାମ । ଆକାଶ ଖାଲି ଦେଖି ଖୁସି ହେବା ପାଇଁ । ବହୁତ ଦିନ ଚାଲାଖ ହେଲଣି, କିଛିଦିନ ବୋକା ହୁଅ ।

—ମୁଁ ଗଧ ହେବାକୁ ଚାହେଁ ନାହିଁ ।

—ନ ହେଇପାର । କିନ୍ତୁ ତୁମେ ସଂସାରରେ ବିଷୟ ଆଶୟ କରିପାରିବ ନାହିଁ । ମାଟି ସାଙ୍ଗରେ ମାଟି ଲାଗିରହେ । ମାଟି ସାଙ୍ଗରେ ଆକାଶ ଲାଗେ ନାହିଁ ।

—ହଁ, ହବ ତ । ସ୍ତ୍ରୀ ଲୋକମାନେ ବୋଧହୁଏ ସେଥିପାଇଁ ଘର ପହଁରନ୍ତି । ପାଣି ଆଣନ୍ତି । ବାସନ ମାଜନ୍ତି । ରନ୍ଧାବଢ଼ା ସାରି ପରଶନ୍ତି ।

—ଠିକ୍ କଥା । ସେତିକ ହେଉଛି ସଂସାର । ସଂସାରର କବଚା ହେଉଛି ଏଇ ଘର କାମ । ସଂସାରର ନାଟକ ହେଉଛି ନିତ୍ୟକର୍ମ ଓ ନିଜର ମନଲାଗି କାମ । ଯେଉଁମାନେ ମାଟିରେ ବସି ଆକାଶ କଥା ଭାବି ଚାଲାଖ ହୁଅନ୍ତି । ସେମାନେ ପ୍ରକୃତରେ ଓଲୁ । ଏ ସବୁ ଆମେ ବୁଝିଲୁ କେବେ—ଜାଣିବ କି ?

—କେବେ ?

—ପିଲାବେଳୁ । ବିଦେଶରେ ଜନ୍ମ ହୋଇ ବିଦେଶୀଙ୍କ ମେଳରେ ଚଳଲାବେଳେ—ତୁମର ସହରର ମାରୁଆଡ଼ି, ଗୁଜୁରାଟି ଆଦିଙ୍କ ପରି । ତେବେ ତାଙ୍କର ଅଛି ଲୋକବଳ—ଆମେ ଥିଲୁ ଏକୁଟିଆ । ଗୃହକରି ଆଉ ଆମେ ।

—ଡର ମାଡ଼େ ?

—ନା । ତେବେ ସବୁବେଳେ ମନରେ ଥାଏ ଯେ ଆମେ ଅନ୍ୟ-ମାନଙ୍କର ନଜର ହେବୁ । ସେମାନେ ଆମକୁ ବାରବେ ନାହିଁ ।

—ସତରେ ?

—ହଁ । ଯ୍ୟାର ନାଁ ହେଉଛୁ ମଣିଷ ପଣିଆ । ସିଏ ତୁମର ନୁହେଁ । ତାହାର ନଜର ହେବା ହେଉଛୁ ମଣିଷ ପଣିଆ । ବୁଝିପାରୁଛ ବୁଦ୍ଧିମାନ ମହାରାଜ ?

—ବାଃ, ମନ୍ଦ ନୁହେଁ । ସିନେମା ଥିଏଟରର ସଂଳାପ ବା କଥା ଘରୋଇରେ ଇଏ ବଡ଼ ଦରକାରୀ ।

—ଆଉରି ଅଧିକ ଦରକାର ପ୍ରତ୍ୟେକ ମଣିଷର ଜୀବନରେ । ଗୋଠ ଭିତରେ ସାମିଲ ହୋଇଥିଲାବେଳେ ମଣିଷ ଭାରି ସାହାସୀ । ସେ ଭଗବାନଙ୍କୁ ବି ଟକ୍କର ଦେଇପାରେ । ଟକ୍‌ଟାକ୍ କଥାକୁ ସେ ଭାବେ ବୁଦ୍ଧି ବୋଲି ।

—ତେବେ ବୁଦ୍ଧି କାହାକୁ କହିବ ?

—ମଣିଷର ମନ କହେ ମାଟିକୁ ଛାଡ଼ି ଆକାଶରେ ଉଡ଼ିବ । ଯେଉଁ ବୁଦ୍ଧି ତାକୁ ଏଥିରୁ ବାରଣ କରେ ସେଇଟି ହେଲା ବୁଦ୍ଧି ।.....ଅସହାୟ ହୋଇଗଲା ପରେ ଆମେ ଏଇ ବୁଦ୍ଧି ଶିଖିଲୁ ।

—ମୁଁ ବି ଅସହାୟ । ବାପା ଚାଲିଗଲେ । ପେନସନ ବନ୍ଦ ହେଲା । ଘରେ କିଛି ନାହିଁ ।

—ଆମେ ତୁମଠାରୁ ଅଧିକ ଅସହାୟ ଥିଲୁ । ମୋ' ବାପା ମଲାବେଳେ ପେନସନ ପାଇ ନ ଥିଲେ ।

—ତେବେ ବଞ୍ଚିଲ କେମିତି ଏତେ ଦିନ ? କଷ୍ଟସୃ ବହୁତ କଷ୍ଟ ଥିଲା ।

—ଇଏ ବି ଗୋଟାଏ ନବୁଝିଆ ଭାବନା । ଗୃହକରିଆ ଯାହା ପାଏ ତାକୁ ଖାଇଦିଏ । ବାପା ମଲା ପରେ ଜାଣିଲୁ ଆମର କିଛି ନାହିଁ ଓ କେହି ନାହିଁ ।

—ମୋର ବ ସେଇଆ ।

—ତାହାହେଲେ ତୁମେ ଏଣିକ ମଣିଷ ହେବ । ଅସହାୟ ହୋଇଯିବା ମଣିଷର ବଢ଼ିବା ପାଇଁ ଦରକାର । ..... ଆଜ ବାପାଙ୍କର କାମ ଚଳାଇବ ଭଲ କର । ମନେରଖିଥିବ ଯେ ବାପାଙ୍କର ପହିଲ ଶ୍ରାଦ୍ଧ— ଏଇ ଦଶ, ଏଗାର, ବାର ଦିନଆ ଶ୍ରାଦ୍ଧ ଆଉ ଥରେ ଆସିବ ନାହିଁ । ମାଆ କିଛି ନ କହି ପାରନ୍ତି । କିନ୍ତୁ ତାଙ୍କୁ ମନରେ ଧକ୍କା ହେବ ।

ଘରକୁ ଫେରିଲାବେଳେ କୃଷ୍ଣ ଠଉର କଲା ଯେ ଅନ୍ୟ ପାଇଁ ଭାବିବା ହେଉଛି ମଣିଷ ପଣିଆ । ଅନ୍ୟ ପାଇଁ ଭାବ ନ ପାରିବା ହେଉଛି ପଶୁର ହୃଦୟ । ତାହାହେଲେ ପୁରୁଷମାନେ କ'ଣ ପଶୁ ?

ଆଉ ସ୍ତ୍ରୀମାନେ କ'ଣ ମଣିଷ ?

ନା, ସ୍ତ୍ରୀମାନେ ମାଟିର ମଣିଷ । ପୁରୁଷମାନେ ଆକାଶର ପକ୍ଷୀ ।

କଥାଟା ମନକୁ ପାଇଗଲା । କୃଷ୍ଣ ବୁଝିଗଲା ଯେ ତାହାର ହୃଦୟ କଅଁଳିଆ ନ ହେଲେ ବ ତାହାର ବୁଦ୍ଧି ସରସ । କିନ୍ତୁ ଖାଲି ବୁଦ୍ଧିରେ ସଂସାର ଚାଲିବ କେମିତି ? ଏଇଟା ଗୋଟାଏ ଡ୍ରେସିଙ୍ଗ୍ ଶୋଇବା ରୁମ୍ ନୁହେଁ । ଘର ନାଁ ହେଉଛି ସଂସାର । ଏଠି ମଣିଷ ଖାଇ ପିଇ ପିନ୍ଧି ବଢ଼ନ୍ତି ଆଉ ମରିଯାନ୍ତି ।

ବାପାଙ୍କର ଦଶ କର୍ମ ପାଖେଇ ଆସିଲା । ଟଙ୍କା ଦରକାର । ଲୋକ ଦରକାର । କିଛି କିଛି ଆୟୋଜନ ଦରକାର । ଲୋକଙ୍କର ସାହାଯ୍ୟ ଦରକାର । ସେତେବେଳେ ବୁଝାଗଲା ଯେ ଫାଜିଲାମିରେ ସଂସାର ଚାଲେ ନାହିଁ । ବୁଦ୍ଧି ମଣିଷକୁ ଫାଜିଲ କରିଦିଏ । ସେଇଠୁ ତାକୁ ନେଇ କଚାଡ଼ିଦିଏ ମାଟିରେ ।

ପୃଥିବୀରେ ଥିବା ଯାଏ ପୃଥିବୀ ଭଲ ପାଉଥିବା କାମ ନ କଲେ ମା ବସୁନ୍ଧରା ଚିଡ଼ିଯିବ । ପରୀକ୍ଷା ଖାତା ଦେଖିଲାବେଳେ ପଢ଼ି ହେଉ ନ ଥିବା ହସ୍ତାକ୍ଷରକୁ ଚିଡ଼ିଯାଇ ନମ୍ବର କାଟିଲାପରି ।

କୃଷ୍ଣ ଭାବିଲା ଟଙ୍କା ଉଧାର କରିବାକୁ । ବିଶେଷ ସୁବିଧା ହେଲା ନାହିଁ । ସେ ବୁଝିଲା ଯେ ଲୋକେ ଆସି ଜୁଟନ୍ତି ମଜା କରିବା ପାଇଁ ।

ସେ ଯେମିତି ଚାଲିଥିଲା ଗାଧୋ ଘରକୁ ମଜ୍ଜାର ସରଧାଦ ମାପିବା ପାଇଁ । ଅନ୍ତତ ସେ ସହାନୁଭୂତି ଦେଖାଇଛନ୍ତି । ସାହାଯ୍ୟ ମାଗିଲେ ସେ ଦେବ ।

କିନ୍ତୁ ତାଙ୍କୁ ମଗାଯିବ କେମିତି ? ବାପାଙ୍କର କାମରେ ଯାଇ ଶେଷରେ ତା'ଙ୍କୁ ମାଗିବାକୁ ପଡ଼ିବ ?

ଚୂପ୍ ହୋଇ ଆଖିରୁ ଲୁହ ଗଡ଼ାଇ ଚାଲିଯାଉଥିବା ବାପାର ରୂପକୁ ଚାହିଁ କରି କୃଷ୍ଣ କହିଲା—ବାପା, ତୁମର ଯଦି କ୍ଷମତା ଥାଏ ତେବେ ମତେ ଏଇ ଅଡ଼ୁଆରୁ ପାର କରିଦିଅ । ମୁଁ କପର୍ଦ୍ଦକ ଶୂନ୍ୟ —ନସ୍ୱ । ମୁଁ ଏଇ ଶୁଦ୍ଧି ଶ୍ରାଦ୍ଧ କରିବ କେମିତି ?

ଲୋକ କହନ୍ତି ଯମ ମଣିଷ ମରିଗଲେ ସରିଲା । ତେଣିକି ତାଙ୍କ କଥା ମିଛ କଥା । କିନ୍ତୁ ମଣିଷ ଚାଲିଗଲା ପରେ ଠାକୁର ହୋଇଯାଏ ଓ ତାହାର ଦରକାରୀ କାମ କରାଇନିଏ । ଠାକୁର ଖୋଜନ୍ତି ପୂଜା । ଅପୂଜା ରହିଲେ ସ୍ୱପ୍ନ ଦିଅନ୍ତି । ମଣିଷ ବି ତାହାର ମରଣ ପରେ ଅଳ୍ପ ଦିନ ଓ ବେଶି ଦିନ ପାଇଁ ଓ ଅନେକ ସମୟରେ ବର୍ଷ ବର୍ଷ ଧରି ନିଜକୁ ସତର୍କ କରିଥାଏ ।

ଇଏ ହେଉଛି କଟକ ସହରର ଗୃହସଂକୀର୍ଣ୍ଣ ଅଞ୍ଚଳର ଜଣେ ଭଦ୍ରବ୍ୟକ୍ତିଙ୍କର ଘରର କଥା । ସେମାନେ ଦୁଇ ଭଉଣୀ ଓ ଧନୀ ଲୋକର ଝିଅ । ଅବସ୍ଥା ଡଳୁଆ ହୋଇଛି । ଆଗର ସାତ ପୋଣିଆ କାଠ ବାଉଁଶ ଘର ଭାଙ୍ଗିଛି । କାନ୍ଥ ରହିଛି ଅଯତ୍ନ ହୋଇ ।

ଉପରୁ ଭଲ ଛପର ନ ହୋଇ ପାଣି ପଡ଼ି କାନ୍ଥ ଓଦା ହେଉଛି । ଦୁଇ ଭଉଣୀ ବାପ ଘରକୁ ଆସିଥିଲେ । ବର୍ଷା ବହୁତ ପଡ଼ୁଥାଏ ।

ରାତିରେ ସେମାନେ ସପନ ଦେଖିଲେ । ମାଆ କହୁଛନ୍ତି—ଉଠ, ଉଠ ମ । କାନ୍ଥ ଅନାଡ଼ ହୋଇ ପଡ଼ିବ । ଖୋଳିଲେ ଦେଖିପାରିବ ପିତଳ ଗରାଟାଏ । ସେଥିରେ ସୁନା ଅଛି । ବାଣ୍ଟିକରି ନେବ । କେହେ ଜାଣିବ ?

ଦୁ' ଭଉଣୀ ଏକା ସପନ ଦେଖିଲେ । ଚାଳରୁ ପାଣି ଆସି ସେମାନେ ଶୋଇଥିବା କାନ୍ଥକୁ ଓଦା କରିଦେଲାଣି । ଆଲୁଅ ଲଗାଇ

ଦେଖିଲେ ଓଡ଼ା କ ଘରର ଗାତ ଭିତରେ ଗବ ଟଙ୍କା ପର କଛି ଦିଶୁଛି । ହାତରେ ମାଟି ଆଉଡ଼େଇ ସୁନା ଭରି ବଡ଼ ଟୋକୋଟାଏ ପାଇଲେ ।

ସେତେବେଳକୁ ମାଆ ମରିବା କୋଡ଼ିଏ ବର୍ଷ ହୋଇଗଲାଣି ।

ଇଏ ସମ୍ଭବ । ଏଇ ସବୁ ମଧ୍ୟ ମିଛ ନୁହେଁ ।

କଟକର ପଚଶି କଲୋମିଟର ଦୂର କସନ ନଗରର ଘୋଷ ବାବୁ । କେବେ ବଙ୍ଗଳାରୁ ଆସିଥିଲେ । ତାଙ୍କର ମାଆ ମରିଗଲେ ଆଠଗଡ଼ରେ ସେଠି ସେତେବେଳେ ବଙ୍ଗାଳୀ ନ ଥିଲେ । ନିଜ ପାଖରେ କେହି ନ ଥିଲେ ।

ଠିକ୍ କଲେ ଯେ କଟକ ଯାଇ କିଛି ବନ୍ଧୁବାନ୍ଧବଙ୍କୁ ଆଣି ମାଆଙ୍କର ସତ୍କାର କରିବେ କିନ୍ତୁ ପାଖରେ ଆଉ କେହି ନାହିଁ । ମାଆର ଶବକୁ ଛାଡ଼ି ସେ ଯାଇପାରୁ ନାହାନ୍ତି ।

ଜଣେ କହିଲେ ସ୍କୁଲର ସାହାଯ୍ୟ ମାଗିବାକୁ । ସାର୍ ମାନେ ଖେଳରୁଛି ବେଳେ ମିଟିଂ କରି କହିଦେଲେ ଯେ ମାଷ୍ଟ୍ରମାନେ ନିଜେ କିଛି କରିପାରିବେ ନାହିଁ । ଉପର କ୍ଲାସର ପିଲାଙ୍କୁ ଧରିଯାଉ ।

ଏକାଦଶ ଶ୍ରେଣୀ ପିଲାମାନେ କହିଲେ ଯେ କେଇଦିନ ଆଗରୁ ସାଆନ୍ତଙ୍କ ଘରେ ଜଣକର ସତ୍କାର କରିଥିଲେ ଯେ ପଇଡ଼ା ବଦଳାଇ-ବାକୁ ଆଠଅଣା ପଇସା ମଧ୍ୟ ଦେଲେ ନାହିଁ । ପିଲାମାନେ ଅଶୌଚ ହୋଇଥିବାରୁ ଘରେ ଗାଳି ଖାଇଲେ ।

ସେଇଠୁ ଦଶମ ଶ୍ରେଣୀରେ ନିଜର ଅସୁବିଧା ଜଣାଇଲା ପରେ ସେଇଠୁ ସାତ ଜଣ ପିଲା ବାହାରିଲେ ଓ ଶବ ସତ୍କାର ହୋଇ ପାରିଲା । ଘୋଷବାବୁ କହନ୍ତି ଯେ ଗୁଲିଯାଇଥିବା ଲୋକର କ୍ଷମତାର ଗୋଟିଏ ଦାଗ ।

ଏହା ମଧ୍ୟ ସମ୍ଭବ । କାରଣ ଧର୍ମଗୁରୁଙ୍କର ଅନୁଭବ ରହିଛି ଯେ ବାପାଙ୍କର ମରଣ ପରେ ଯେଉଁ ପୁଅ କ୍ରିୟା ଧରିଥାଏ ସେ ବହୁତ ଭୋଗେ କିନ୍ତୁ ପଇସାପତ୍ରର ଅଭାବରେ ପଡ଼େ ନାହିଁ । ଏହି ଅନୁଭବ ମାଆର ମରଣରେ ଆସେ ନାହିଁ ।

ଅଶାନ୍ତି ଶକ୍ତି ଏହିପରି ଭାବରେ ନଜର ଲୋକଙ୍କୁ ସାହାଯ୍ୟ ଓ ସୁବିଧା ଆଣିଇ ଦିଏ । ଅପର ଲୋକ ମନରେ ଇଚ୍ଛା ସୃଷ୍ଟି କରାଇ ଅଶାନ୍ତି ତାହାର ଇଚ୍ଛା ପୂରଣ କରେ । ସଂସାର ଚାଲେ ଏମିତି ଜୀବିତ ଓ ମୃତଙ୍କର ମିଳାମିଶାରେ ।

ନଜର ଲୋକ ଆପଣା ଘରେ । ଅନ୍ୟର ଘରେ ସେ ଭୂତ । ଭୂତ ଓ ଦେବତାଙ୍କ ମଧ୍ୟରେ ଫରକ ରହିଛି କେବଳ ଚିନ୍ତିବାରେ । ଉଭୟେ ଅଶାନ୍ତି ଓ ଲାଭକ୍ଷତି କରାନ୍ତି ଅନ୍ୟର ମନରେ ପ୍ରବେଶ କରି ।

ତେଣୁ ଦେହ ସାଙ୍ଗରେ ମନ ଓ ମନ ସାଙ୍ଗରେ ବୁଦ୍ଧି ଲାଗି ରହିଛି । ଏଥିପାଇଁ ଦେହର ଉତ୍ସାହକୁ ଆଦର କରି ଅନ୍ୟାୟ ଓ ପାପ ନ କରିବା ପାଇଁ ସବୁବେଳେ ଓ ସବୁଠାରେ ନିୟମ ରହିଛି ।

ମୁହଁ, ପାଟି, ଜିଭ ଖାଇବା ପାଇଁ ହୋଇଛି । ଠାକୁରଙ୍କୁ ଭଜନ କରିବା ପାଇଁ ହୋଇଛି । ଏହାକୁ ସଫା ସୁତୁରା ଓ ପବିତ୍ର ରଖିବା ପାଇଁ କିଛି ବ୍ୟବସ୍ଥା ରହିଛି । ଏହି ଅଂଶରେ ଉତ୍ତେଜନାର ଓ ପରମ ସ୍ନେହର ଚୁମ୍ବନ ଦିଆଯାଏ । ଆଉ ମଧ୍ୟ ଏଠାରେ ଜିହ୍ବାରତି ଇତ୍ୟାଦି ହୋଇପାରେ ।

ଏକାମାତ୍ରି ହେଉଛି ଶ୍ମଶାନ, ମନ୍ଦିର ଓ ନଜର ଘର ଉଦ୍ଧ । ଏଇ ଏକା ଦେହ ହେଉଛି ଠାକୁର ମନ୍ଦିର । ପକ୍ଷୁଆ ପୋଖରୀ ଓ ନଜର ସବୁଠାରୁ ମୂଲ୍ୟବାନ୍ ପଦାର୍ଥ ।

ବ୍ୟବହାରର ପ୍ରଭେଦ ନେଇ ପାପ ଓ ପୁଣ୍ୟ ହୁଏ । ଯେଉଁ ଯୁଗରେ ଠାକୁରାଣୀ ପୂଜା କରି ନିଜ ଦେହରୁ ରକ୍ତ ଦିଆଯାଏ ଓ ଫଳ ବଳ ବୈଷ୍ଣବୀ ରୂପରେ ଦେବୀଙ୍କୁ ଦିଆଯାଏ, ସେଇ ଯୁଗରେ ନଜର କାଗଜ ପେନ୍‌ସିଲ କଟା ଯାଇପାରେ ଓ ଅପରର ପେଟରେ ଲଗାଇ ଦିଆଯାଇପାରେ ।

ବ୍ୟବହାର ହେଉଛି ପାପ ଓ ପୁଣ୍ୟର ଏକମାତ୍ର ଭିନ୍ନଭେଦ । ତେଣୁ ସେଇ ଏକ ମଣିଷ ପାପୀ ଓ ସାଧକ । ହୁଏତ ଦିନରେ ସାଧକ ଓ ରାତିରେ ପାପୀ । ସେଇ ମଣିଷ ଆଜି ଜୀଅନ୍ତା ପାପୀ ଓ କାଲି ମଲାପରେ ସେ ହେବ ଦେବତା ।

ପ୍ରତ୍ୟେକ ଲୋକ ମରିବା ଆଗରୁ ସେଇ ଶେଷରେ ଅଦ୍ଭୁତ ଶକ୍ତି ସମ୍ପନ୍ନ ଦେବତା ହୋଇଯାଏ । ସେତେବେଳେ ସେ ତାହାର ସାହାଯ୍ୟକାରୀ ଠିକ୍ କରିନିଏ । ଯେଉଁମାନେ ଏତିକ ସାହାଯ୍ୟରେ ଖୁସି ନ ହୋଇ ଅଶରୀରୀଙ୍କୁ ନିଜର ସୁବିଧା ପାଇଁ ବ୍ୟବହାର କରିବାକୁ ଆଗ୍ରହୀ ହୁଅନ୍ତି, ସେମାନେ ଏଇ ପ୍ରେତଙ୍କୁ ସନ୍ତୁଷ୍ଟ କରି ବନ୍ଦୀ କରି ନିଜର କାମରେ ଲଗାନ୍ତି ।

ସାରା ପୃଥିବୀରେ ଏଇ ପ୍ରେତପୂଜା ବିଭିନ୍ନ ଆକାରରେ ବିଭିନ୍ନ ଫଳପ୍ରାପ୍ତି ପାଇଁ ଚାଲିଛି । ଏହାକୁ କିଛି ଲୋକ କାମରେ ଲଗାଇ କେନ୍ଦ୍ର ଓ ରାଜ୍ୟ ମନ୍ତ୍ରୀ, ସଚିବ ଓ ପଦପଦବୀ ଧାରୀ ହୁଅନ୍ତି । ପ୍ରତ୍ୟେକ ଅପ-ବ୍ୟବହାର ହେଉଛି ପାପ—ତେଣୁ ପାପର ଦଣ୍ଡ ମଧ୍ୟ ଭୋଗନ୍ତି ।

ଏଥିରେ ଗୋଟିଏ ଅସୁବିଧା ରହିଛି । ସେଇଟା ହେଲା ବଣୁଆ ଲୋକର ପ୍ରେତ ଅବା ପିଅନର ପ୍ରେତ ତାହାର ଚେଷ୍ଟାରେ ଜଣକୁ ସାହସୀ ବୀର ଅବା ବଡ଼ ସହରର ସୌଦାଗର କରି ପାରିବ ନାହିଁ । ସେ ନିଜର ପରିସରରେ ଯାହା କିଛି ଦେଇ ପାରିବ ।

କୃଷ୍ଣର ବାପା ଚାଲିଯିବା ଆଗରୁ ରାଧାର ସାହାଯ୍ୟ ମାଗି ଚାଲି ଯାଇଥିଲେ । ରାଧାର ଆଗରୁ ସହାନୁଭୂତି ଥିଲା । ତେଣୁ ଚଞ୍ଚଳ ସେ ଧରି ନେଇ ପାରିଲା ।

ରାଧାର ସାହାଯ୍ୟରେ ସବୁ କାମ ଅଳ୍ପ ବହୁତ ହେଇ ହୋଇଗଲା । ସେ ଥିଲା କୃଷ୍ଣଠାରୁ ଓ କୃଷ୍ଣର ପରିବାରଠାରୁ ଅଧିକ ଅନୁଭବୀ ।

ବାପାଙ୍କର ମରିବା ଆଗରୁ ଓ ପରେ ସ୍ଥାଣ୍ଣସ୍ଥ ସମ୍ବନ୍ଧରେ ପରି-ବର୍ତ୍ତନ ହେଲା । ଆଗରୁ ରାଧା ଥିଲା ଗୋଟିଏ କୌତୁକର ପ୍ରେମ କେନ୍ଦ୍ର ବିନ୍ଦୁ । ସେ ହେଇଗଲା ଗୋଟେ ଦରଦୀ ବନ୍ଧୁ ।

ଦରଦୀ ବନ୍ଧୁ ଜଣେ ନାରୀ ହୋଇଥିଲେ ସେ ହେଇଯାଏ ପ୍ରେମିକା । ପ୍ରେମର ଅର୍ଥ ସହାନୁଭୂତି । ସେଥିରେ ଚୁମ୍ବନ, ଆଲିଙ୍ଗନ ବା ଧରାପରା ହେଉଛି ଗୋଟିଏ ବ୍ୟବହାରିକ ଦିଗ ।

ସମସ୍ତେ ଏଇ ବକ୍ତୃତାକୁ ଧରି ନଅନ୍ତି କେବଳ ଶେଷ କାରବାର । ସେମାନେ କାନି ଆଙ୍ଗୁଠି ଉଠାଇ ସାହାଯ୍ୟ କରିବେ ନାହିଁ କିନ୍ତୁ ଅନର୍ଗଳ ନିଦ୍ଧାର ବକ୍ତୃତା ଦେବେ ।

ଏଇ ଲୋକମାନେ ସାଧୁ ନୁହଁନ୍ତି । କିନ୍ତୁ ସାଧୁର ଭେଶ ଧରି ସଂସାରକୁ ଉଚିତ ମାର୍ଗରେ ରଖିବା ପାଇଁ ପଦାରେ ଠିଆ । କଥାରୁ ସାଧୁତା ଧରାଯାଏ ନାହିଁ ।

ଏଥର ପରୀକ୍ଷା ହେଉଛି ମନରେ । କି କାରଣରୁ ସେଇ ଲୋକଟି ସେମିତି କହୁଛି—ମନର ବ୍ୟର୍ଥତା ପାଇଁ ? ମନର ଇର୍ଷା ପାଇଁ ? ନା, ନିଜେ କିଛି ପାଇପାରୁ ନାହିଁ ବୋଲି ।

କହିବା କଥା ହେଉଛି—ଦେହର କଥା ।

କାହିଁକି କହିଲ—ସେତିକ ମନର କଥା ।

କହିବାର ଭଙ୍ଗୀ ହେଲା—ବୁଦ୍ଧିର କଥା । ସେ' ପାପ କି ପୁଣ୍ୟ —ଏଥର ବିଶ୍ୱର ଅନୁଭବର କଥା । ଉପରେ ଈଶ୍ୱର ଓ ଭିତରେ ଆତ୍ମା ଦେଖୁଥାଏ କିଏ କ'ଣ ପାଇଁ କେମିତି ଛଇଛିଟିକ ହେଉଛି ।

ତେଣୁ ପବିତ୍ରତା ଓ ସାଧୁତା ଗୋଟିଏ ଭେକ ହୋଇପାରେ । ଇଏ ଅତ୍ୟନ୍ତ ଅପବିତ୍ର ଓ ଠକେଇ ହୋଇପାରେ । ବ୍ୟବହାର ଓ ବ୍ୟବ-ହାରର କାରଣକୁ ଠଉରାଇଲେ କିଛି କିଛି ବୁଝି ହୁଏ ।

ରାଧାର ସହାନୁଭୂତିକୁ ସେଇ କଷଟିରେ କୃଷ୍ଣ ମାପିଥିଲା—କ'ଣ ସେ ଗୁହେଁ ?

ଦେଖା ହୋଇଥିଲା । କଥାବ ଅନେକ ହେଲା । ରାଧା ପଚାରିଥିଲା —ଏବେ ବାପାଙ୍କ ପରେ ମୁରବୀ କିଏ ?

—କାହିଁ ମୁଁ ? ମୁଁ ସବୁଠାରୁ ବଡ଼ ।

—ତୁମେ କ'ଣ ସମସ୍ତଙ୍କଠାରୁ ବେଶି ରୋଜଗାର କର ?

—ତୁମେ କ'ଣ ଜାଣ ନାହିଁ ମୋର ରୋଜଗାର କଥା ? ମୋର ରୋଜଗାର ବହୁତ କମ୍ ।

—ତେବେ ତୁମେ ମୁରବୀ ହେବ କେମିତି ? ପାଓ୍ୱାର ନ ଆସିବାରୁ ଓକିଲ୍ ହାଇକୋର୍ଟ ଜଜ୍ ହେଇପାରୁ ନାହିଁ । ଆଉ ତୁମେ ଟଙ୍କାର ପାଓ୍ୱାର ନ ପାଇ ମୁରବୀ ପଦବୀ ପାଇଲ କେମିତି ?

—ତୁମର କ'ଣ ଦରକାର ସେଥିରେ ?

—ତୁମେ ଘରକୁ ଗଲେ କାହାର ଅନୁମତି ନେଇ ଅବା ବଶ୍ୟତା ସ୍ୱୀକାର କରି ଘର ଭିତରକୁ ପଶିବ ? ବଡ ମୁଣ୍ଡିଆ କିଏ ?

—କାହିଁ ମୁଁ ?

—ତମେ କେମିତି ହେବ ? ତୁମର ଭାଇ ଭଉଣୀମାନେ କ'ଣ ତୁମକୁ ପାଓ୍ୱାର ଦେବେ ?

—ଦେବେ । କାରଣ ଘର ଚଳାଇବା ଖର୍ଚ୍ଚ କଥା ରହିଛି । ଭାଇମାନେ ବାହାହେଇ ଘର କରିବେ । ଭଉଣୀମାନେ ଆଗରେ ପଛରେ ଚାଲିଯିବେ । ଜଣେ ଅଧେ ଭାଇଭଉଣୀ ବାହା ହେଇଗଲେଣି ।

—ହେଲେ ବି ତୁମେ ବାହା ହେଲନାହିଁ । ବାହାପାଣି ନ ପଡ଼ିଲେ ରୋଜଗାର ଯୋଗ ପଡେ ନାହିଁ । ରୋଜଗାର ନ ହେଲେ ତୁମେ ଟଙ୍କା ପାଇବ କେଉଁଠୁ ଯେ ବଡ ମୁଣ୍ଡିଆ ହବ ?

—କାହିଁକି ଅଭିଆଡ଼ା ଲୋକ କ'ଣ ଟଙ୍କା କମାଉ ନାହାନ୍ତି ?

—ନିଶ୍ଚୟ ଆଣୁଛନ୍ତି କାରଣ ସେମାନେ ହାଉଡ଼ା ନୁହଁନ୍ତି କି ହାଉଳା ନୁହଁନ୍ତି ।

କୃଷ୍ଣ ଭାରି ରାଗିଗଲା ଯେ ତାହାର ମାନମହତ ଉପରେ କଥା ପଡ଼ିଯାଉଛି । ତାକୁ ସିନା ସମସ୍ତେ କହିବେ ଯେ ସେ ଭଲ । କୃଷ୍ଣ ଭାରି ହାଇ ମାଇଣ୍ଡିଆ ଲୋକ । ସେ ଗୋଟାଏ ସଫା ମନ ଓ ଖୋଲା ହାତର ଲୋକ । ଏଣେ ରାଧା ସାର୍ଟିଫିକେଟ୍ ଲେଖିଲାଣି—ହାଉଡ଼ା ଓ ହାଉଳା ।

ରାଧା ଚାହିଁ ରହିଥିଲା କୃଷ୍ଣକୁ । କୃଷ୍ଣର ଆଖି ଦୁଇଟିରେ ରାଗ ଓ ମୁହଁରେ ଉଦ୍‌ବେଗ ।

ହସି ରାଧା କହିଲା—ତୁମେ ବିରକ୍ତ ହୋଇ ଯାଇଥିବ। ମୁଁ ତୁମକୁ ହୃଦୟ ଭରି ଭଲପାଏ। ତାହା ବଦଳରେ କ'ଣ ଦି'ପଦ ସତ କଥା କହିପାରିବ ନାହିଁ ? ସେ ଅଧିକାର ମତେ ଦବ ନାହିଁ ?

କୃଷ୍ଣ ଖୁବ ଖୁସି ହୋଇଗଲା ଯେ ତାକୁ ରାଧା ହୃଦୟଭରି ଭଲ ପାଏ। ସେ ହୃଦୟ କେଉଁଠି ଓ କେତେ ବଡ଼ କ ଶ୍ରେଷ୍ଠ ବୁଝିବା ଦରକାର ନାହିଁ। ଏମିତି ମୁହଁ ଖୋଲି ତାକୁ କେହି କେବେ ହେଲେ ପିଲା ଦିନରୁ ତାକୁ ଗୁଳଣି ବର୍ଷ ହେବାଯାଏ ଥରେ ବି ଏମିତି କଥା କହି ନାହିଁ।

ରାଧା ପ୍ରଶ୍ନ କଲା—ତୁମକୁ କ'ଣ କେହି କେବେ ଭଲ ପାଇ ନାହାନ୍ତି ?

—କେଜାଣି ? ଭଲ ପାଉଥିଲେ ବୋଲି ବେଳେ ବେଳେ କେହି କେହି ମତେ ଇସାରା ଇଙ୍ଗିତରେ ଜଣାଇ ଦେଉଥିଲେ। କାନ୍ଥବାଡ଼କୁ ଉଲ୍ଲେଖ ଦେଇ କେହି ତାହାର ସଙ୍ଗାତକୁ କହିଛି ଅବା ଲେଖିଛି। ପୁଣି କେତେ କେତେ ବେଳେ କେହି ତାହାର ଧରମ ଭାଇ ଓ ଧରମ ବନ୍ଧୁକୁ ଜଣାଇଛି।

—କୁଆଡ଼େ ଗଲେ ସେମାନେ ?

—ପଳାଇଲେ। ବାହା ହୋଇ ଯାଉଛନ୍ତି।

—ଦେଖା ହୁଏ ?

—କେବେ କେମିତି ?

—ସେମାନେ କ'ଣ କୁହନ୍ତି ?

—କିଛି ନାହିଁ। କିଏ ନ ଜାଣିଲା ପରି ହୁଏ। କିଏ ଭୁଲି ଯାଇଥିବାର ଭାବ ଦେଖାଏ। ଆଉ କିଏ ଜଳକା ଚାହାଣୀରେ ଚାହିଁ ହୋଇ ଆଗେଇ ଯାଏ।

—କେହି ତେବେ ଅଟକି ରହିଲେ ନାହିଁ ? କେହି ଆଉ ଥରେ ସେ ଆଦ୍ୟକାଣ୍ଡ ପଢ଼ିବାକୁ ମନ ଦେଲେ ନାହିଁ ?

— ନା । କାରଣ ଦିନକୁ ଦିନ ମୋର ସ୍ଥାନ ଖସୁଥାଏ । ଜୀବନର ଆକାଙ୍କ୍ଷା କମୁଥାଏ । ଉପାର୍ଜନ କମୁଥାଏ । ମୋର ଛତ୍ରା ଲୋକ ମତେ ରଦ୍ଦିଆ ବୋଲି ଭାବିବା ଆରମ୍ଭ କରୁଥାନ୍ତି । ଏଣେ ସେମାନଙ୍କର ପରିବାର ବଢ଼ୁଥାଏ ଓ ତାଙ୍କର ସ୍ନେହ ପ୍ରେମ ତାଙ୍କ ଭିତରେ ଓଦା ସିମେଣ୍ଟରୁ କନକ୍ରିଟ୍ ହେବାରେ ଲାଗିଥାଏ । ସେଠି କୃଷ୍ଣର ସ୍ଥାନ କାହିଁ ? ସେ କାପ୍ଟେନରୁ ଓହ୍ଲେଇ ଏକସ୍ଟ୍ରା ପ୍ଲେୟାର ହେଇଗଲାଣି ।

—ଅନ୍ତତ ତୁମେ ସତ କହିବା ଅଭ୍ୟାସ ରଖିଛ । ମନେ ରଖିଥିବ ଏଇ ସଂସାରଟା ହେଉଛି ଦେହର ସଂସାର—ମାଟି ଧୂଳିର ସଂସାର । ଏଠି କେହି କାହାପାଇଁ ଦିନ ସବୁ ସବୁଦିନେ ଅଧିକ ଅପେକ୍ଷା କରିପାରିବ ନାହିଁ ।

—ଆଉ କି ପ୍ରକାରର ସଂସାର ହେଇଥିଲେ ହେଇଥାନ୍ତା ।

—ଯଦି ସଂସାର ଚାଲୁଥାନ୍ତା ମନ ଉପରେ ତାହାହେଲେ ଜଣେ ମନୁଆ ଆଉ ଜଣେ ମନେଇ ବା ମନୁଆ ପାଇଁ ବସିରହି ନିଜକୁ କହୁଥାନ୍ତା ଯେ ସେ ବାଟ ଚାହିଁ ବସିଛି । ବସିଥିବ ଜୀବନର ଶେଷ ଯାଏ ।

—ଏଇ ତପସ୍ୟା ଓଡ଼ିଶାରେ ଆରମ୍ଭ ହେଇ ନାହିଁ । ମନର ସଉକ ପାଇଁ ଜିନ୍ଦଗୀ ବରବାଦ କରିବା ଏଠି ହେଉଛି ଓଲାମି । ଏଠି ପ୍ରେମ କହିଲେ ଦେହର ନେଣଓଟେରି ବୁଝାଏ । ଏଠି ମନର କମତ୍ ନାହିଁ । କାରଣ ଏଠି ଶିକ୍ଷା ନାହିଁ ।

—ଇଏ ବି ସତ କଥା । ଅନେକ ଦିନ ପରେ ଯେତେବେଳେ ତୁମର ଓ ମୋର ଏଇ ମୂଲକ ଆଉରି ଉଚ୍ଚ ହେବ ସେତେବେଳେ ତୁମେ ମନର ଫୁଲ ପାଇବ । ତୁମର ଦେଶ ଛାଡ଼ି ଅନ୍ୟ ଆଡ଼କୁ ଚଳେ ତୁମେ ମନର ଧ୍ରୁବ ଶୁଣିବ । ଏଠି ଅଛି ଦେହର ବନ୍ଦନା । ତୁମେ ଏମିତି ହାଉଡ଼ା ହେଲ କେମିତି ?

— କାହିଁକି ମତେ ହାଉଡ଼ା କହି ଦୁଃଖ ଦେଉଛ ?

—ଆରେ ଠିକ୍ କଥାକୁ ତୁମେ ଗାଳି ବୋଲି ଭାବୁଛ କାହିଁକି ? ଏଠିକି ଆସି ଦେଖିଲି ତୁମରି ପରି ଲେଖାପଢ଼ା ଲୋକଙ୍କ ଭିତରେ

ମୋଟେ ଗୃହ ପାଞ୍ଚ ଜଣ ଆଉଆଡ଼ା । ସେଥିରୁ ପ୍ରାୟ ସମସ୍ତେ ଖଣ୍ଡେ ଖଣ୍ଡେ ଗୃହକରରେ—ଏକା ତୁମକୁ ଛାଡ଼ । ବୋଧହୁଏ ତୁମେ ହାଉଳା ବୋଲି ଗୃହକର କଲ ନାହିଁ । କରିଥିଲେ କିଛି କିଛି ମନର ରାଗ ସେଠି ଲୁଚି ଯାଇଥାନ୍ତା । ...ଛାଡ଼ ମୁଁ ତୁମକୁ ନଜର ବୋଲି ଭାବେ ।

—କ'ଣ ପାଇଁ ?

—ଖାଲି ଏମିତି ତୁମପରି ଜଣେ ହାଉଡ଼ା ଓ ହାଉଳା ସାଙ୍ଗରେ ଘର କରି ଦେଖିବ ।

—ଲାଭ କ'ଣ ?

—ଏଥିରେ ଲାଭ କ୍ଷତି ହିସାବ ନ ଥାଏ । ମନର ସଉକ ପାଇଁ ମଣିଷ ଘର ଛାଡ଼ିପାରେ ଓ ଘର କରିପାରେ । ଠାକୁରଙ୍କୁ ଛାଡ଼ ନିଶା ଖାଇପାରେ ଅବା ନିଶା ଛାଡ଼ ଠାକୁରରେ ଭୋଳ ହୋଇପାରେ । ସେଇଟା ସଉକ୍—ମନର ସଉକ୍ । ସିଏ ଦେହ ନୁହେଁ ଯେ ତାହାର ରଙ୍ଗ ଓ ଗନ୍ଧରେ ଭୋଳ ହେବ ।

—ମୋର କିଛି ନାହିଁ ।

—କିଏ କହିଲା ? ସମସ୍ତଙ୍କର ସବୁ ଅଛି । ମଣିଷର ସବୁ ଅଛି । ଭୂତ ପ୍ରେତଙ୍କର ମଧ୍ୟ ସବୁ ଅଛି । କାହାର ଦେହ ଅଛି—ମନ ନାହିଁ । କାହାର ମନ ଅଛି—ଦେହ ନାହିଁ । କିଏ ଅବା ଦେହକୁ ବଡ଼ ନ କରି ମନକୁ ବଡ଼ କରିଛି । ଖିଆଲକୁ ପେଟଠାରୁ ବଡ଼ କରିଛି । ଏବେ ବୁଝିଲ ତ ।

—ନା । ମୁଁ ତୁମକୁ ଲୁଗା ଖଣ୍ଡେ ଅବା ଗହଣା ଖଣ୍ଡେ ଦେଇ ପାରିବ ନାହିଁ । ଖାଇବାକୁ ଦେଇ ପାରିବ ନାହିଁ ।

—ନ ଦିଅ । ମୋର ଯଥେଷ୍ଟ ଅଛି । ଯାହା ଅଛି ସିଏ ମୋ ପାଇଁ ଯଥେଷ୍ଟ । ଦେହ ପାଇଁ ଯଥେଷ୍ଟ ହେଲା– ମନ ପାଇଁ କିଛି ନାହିଁ ।

—କ'ଣ ଦରକାର ତୁମର ?

—ଗୋଟିଏ ଘର କରିବା ଦରକାର । ଆଜ ମହାଶୟ, ଜାଣି ନାହିଁ ଯେ ଏକୁଟିଆ ହୋଇ କେହି ଘର କରିପାରେ ନାହିଁ ।

କୃଷ୍ଣ ବହୁତ ଖୁସି ହୋଇଗଲା । ହେଲା ଏବେ ତାକୁ ଗୃଳଣି ବର୍ଷ । ସାଙ୍ଗମାନେ ଗୃହକର୍ମ କରି ସାରିଲେଣି ପନ୍ଦର ବର୍ଷରୁ ଅଧିକ । ତାଙ୍କର ପିଲାମାନେ ହାଇସ୍କୁଲ ଗ୍ରଡ଼ିବା ଘୁଡ଼ିବା ହେଲେଣି । ତାଙ୍କର ସ୍ତ୍ରୀମାନେ ଘରର ମାଲାକାଣୀ ହୋଇ ସାରି ଶାଶୁ ହେବାକୁ ବାହାରିଲେଣି । ଜୀବନ ଦର୍ଶନର ଟୀକାକାର ହୋଇଗଲେଣି ।

ନ ହେବେ କାହିଁକି ? ଦିନକୁ କୋଡ଼ିଏ ଗୃଳଣି ଟଙ୍କା ମିଳିଲେ କିଏ ଅବା ଜୀବନ ଦର୍ଶନ କଥା ନ କହିବ ? ତାଙ୍କର ଜୀବନ ପୁରୁଣା ନିୟମରେ ବ୍ରହ୍ମଚର୍ଯ୍ୟ—ଗାର୍ହସ୍ଥ୍ୟ ଆଶ୍ରମ ଡେଇଁ ଗୃହକରରେ ବାନପ୍ରସ୍ଥ ଆଡ଼କୁ ମୋଡ଼ିହେଲାଣି ।

ବିଚରା କୃଷ୍ଣର ବ୍ରହ୍ମଚର୍ଯ୍ୟ ଆଶ୍ରମ ଡବଲ ହୋଇଯାଇଛି । ନୂଆ ବ୍ରହ୍ମଚାରୀମାନେ ତାକୁ ବୁଝନ୍ତି ଗୋଟାଏ ଭଣ୍ଡ ବୋଲି । ଗାର୍ହସ୍ଥ୍ୟ ଆଶ୍ରମୀ-ମାନେ ତାକୁ କହନ୍ତି ଯେ ସେଇଟା ଗୋଟାଏ ଟକଳିଆ ବୈଷ୍ଣବ ।

କ'ଣ ଅବା ସେ କରିବ ? କେହି ଜଣେ ତାକୁ ପାଣିରୁ ନ ଉଠାଇଲେ ସେ ଉଠିବ କେମିତି ? ବ୍ରହ୍ମଚର୍ଯ୍ୟ ଆଶ୍ରମର ପାଣି ପେଟେ ପିଇଯାଇଛି । ସେଥିପାଇଁ ଗାର୍ହସ୍ଥ୍ୟ କଥା ତାକୁ ବିରକ୍ତ ଲାଗେ । କ'ଣ ସେ ଅବା ଏକା ଏକା କରିପାରିବ ?

ଏତେଦିନକେ ଗୋଟାଏ ବିଚରା ନାରୀ ବାହାରିଛି—ସେ କହିଲାଣି ଆ ଆ ହାଜଡ଼ା । ତତେ ନେଇ ଘର କରିବ ।

ଏଁ—ଏମିତିରେ କ'ଣ ଘର ହୁଏ ? ନା ଗାର୍ହସ୍ଥ୍ୟ ଆଶ୍ରମ ହୋଇପାରେ । ଏଣେ ଏକ୍ ଓଭର ହୋଇଯାଇଛି—ଯାହାକୁ କହନ୍ତି ଝିଅକୁ ବସେଇ ବସେଇ ବୁଢ଼ୀ କରିଦେଲେଣି । କୃଷ୍ଣ ବି ସେମିତି ବୁଢ଼ା ହୋଇଯାଇଛି ।

ପଣ୍ଡିତ ଜବାହାରଲାଲ ନେହେରୁ ମନଇଚ୍ଛା ଏଇ କୃଷ୍ଣପରି ଲୋକଙ୍କର ଯୁବାବସ୍ଥାକୁ ତାରିଫ କଲେ ବି କିଛି ସୁବିଧା ହେଲା ନାହିଁ ।

ଏଇ ଦେଶର ଉତ୍ତର ଭାରତ ନୁହେଁ—ଦକ୍ଷିଣ ଭାରତ ବି ନୁହେଁ । ଇଏ ଗୋଟାଏ ଦେଶମାନଙ୍କ କଥା ଜାଣେ । ଏଠି ବୃଦ୍ଧା ହେବା ଛଡ଼ା ଅନ୍ୟ କିଛି ଉପାୟ ନାହିଁ ।

ଆଉ ବୁଢ଼ାଙ୍କୁ ବୁଢ଼ା ବୁଢ଼ା କହି ଥଟ୍ଟା କରିବା ଛଡ଼ା ଲୋକଙ୍କର ଅନ୍ୟ କିଛି କାମ ନାହିଁ ।

ସେମାନେ ଯଦି କେବେ ସୁରାଖ ପାଆନ୍ତି ଯେ ବୁଢ଼ା କୃଷ୍ଣ ଆଙ୍କୁ ଜଣେ ବନ୍ଧୁବର୍ଗ କରି ଠିକଣା କଲାଣି ତେବେ ସେମାନେ ସାଙ୍ଗେ ସାଙ୍ଗେ କହିବେ କଟକ ପରିବା ମଣ୍ଡି କଥା—ସେଠି ତଟକା ପରିବା ମିଳେ ଓ ପାଞ୍ଚ ଛଅ ଦିନର ବାସି ପରିବା ବି ମିଳେ ।

କିନ୍ତୁ ଜୀବନର ଏତେ ବଡ଼ ଖବର କେହି କ'ଣ ଲୁଚାଇ ରଖି-ପାରେ ? ବହୁତ ବହୁତ ବର୍ଷ ପରେ ପାଣି ଧାର ଓଲଟିଛି । କୃଷ୍ଣଙ୍କୁ ଜଣେ ମୁଲେଇଲାଣି ।

କୃଷ୍ଣଙ୍କୁ ଭାରି ଅଡ଼ୁଆ ଲାଗିଲା—ଇସ୍ କି ଲାଜ କଥା । କୋଡ଼ିଏ ବର୍ଷ ଅଭିଆଡ଼ା ରହିସାରି ସେଇ କାମରେ କନଫାରମ ହେଇଯିବା ପରେ ପୁଣି ଏସବୁ କ'ଣ ? ଯିଏ ଶୁଣିବ ସେ ହସିବ । ଏତେ ଲୋକଙ୍କର ହସକୁ ସମ୍ଭାଳିବାକୁ ଦେହରେ ବଳ ଥିଲେ ତ ।

ମଣିଷର ଦେହ ଏତେ ଦୁର୍ବଳ ଯେ ସେ ଦୁଇଟା ମାତ୍ର ସହି ପାରିବ କିନ୍ତୁ ଥଟ୍ଟା ପରିହାସ ସହି ପାରିବ ନାହିଁ । କାରଣ ମନଟା ଦେହଠାରୁ ବଳୁଆ । ମନ ଦେହକୁ କାବୁ କରିଦିଏ ।

ଥଟ୍ଟା ବା ସମାଲୋଚନା ହେଉଛି ମନକୁ ମାଡ଼ । ଦେହ ସେଠି ଯିଠି ଦେଖାଇପାରେ ନାହିଁ । ବାଧରେ ତରିଯାଏ ।

କୃଷ୍ଣ ଯଥେଷ୍ଟ ବଳୁଆ ହେଇଥିଲେ ବି ଏ ସବୁ ମନର କଥା ପଢ଼ିଲାବେଳକୁ ଭାରି ଡରକୁଳା । ବୁଦ୍ଧି ଛାଡ଼ିବା ବାଲା ନୁହେଁ । ସେ ତାଙ୍କୁ ତେଜଉଥାଏ—ଯାଆ ମ । ଯିଏ ଯାହା କହୁଥାନ୍ତୁ । ସେମାନେ କ'ଣ ବାଧା ପରି ଏମିତି ଗୋଟାଏ ଷ୍ଟେଟମେଣ୍ଟ କରିପାରିବେ ?

"ମୁଁ ହାଉଡ଼ା ଘାଟରେ ଘର କରିବ।"

କେବେ କରିପାରିବେ ନାହିଁ। ଏମିତି ଗୋଟାଏ କଥାର ଦାମ୍ ଅମୂଲମୂଲ। ଏଥିରେ ବୁଢ଼ା ଜୀବନର ସଞ୍ଜୀବନୀ ପାଣି ରହିଛି। ସ୍ଲାଇ ଗ୍ଲୁକୋଜ ସାଲାଇନ ବା ରକ୍ତ ଟ୍ରାନସଫିଉଜନ୍ କୁହାଯାଇପାରିବ।

କୃଷ୍ଣ ଖାଇଁ ଉଠିଲାଣି।

ଆଗରୁ ସେ ଦରମରା ହୋଇଥିଲା। ବାପା ମଲା ପରେ ଜାଣିଗଲା ଯେ ମରଣ ବେଶି ଦୂରରେ ନାହିଁ। କ'ଣ ଅବା ସିଏ କରିବ ? ଦମ୍ ଫାଟିଯାଇଛି—ସାହା ହେଉଛି ହଉଥାଉ।

ସେତେବେଳେ ଅସୀମ ଦୟା, ସ୍ନେହ, କରୁଣାର ଗଙ୍ଗାନଦୀ ବୁହାଇ ଦେଲାଣି ରାଧା। ଦେଖାଯାଉ କ'ଣ ହେଉଛି ?

କୃଷ୍ଣର ସମସ୍ତ ଜୀବନ ଭିତରେ ଏଇଟି ଗୋଟାଏ ନୂଆ ଅନୁଭବ—ହଠାତ୍ ଜଣେ ଅନାଡ଼ି ଗୋଟାଏ ମୁଖ୍ୟମନ୍ତ୍ରୀ ହୋଇଗଲା ବା ଆଉ ଗୋଟାଏ ଅଗାଡ଼ି ଧାନ ପାଲଟିଗଲା। ରାଧାର ସେଇ କେଇପଦ କଥା ଏ ସବୁ ଅସମ୍ଭବ କଥାଠାରୁ ଅଧିକ ବାସ୍ତବ।

କୃଷ୍ଣ ଜାଣିଥିଲା ଲାଜକୂଳୀ ଲଟା ପରି ଝିଅଙ୍କୁ—ହାତ ବଢ଼ାଇଲେ ସେମାନେ ଘର କାନ୍ଥ ଭିତରେ ମିଶିଯିବେ। ଏବେ ଦେଖିଲା ରାଧା ହେଉଛି ପୂରା ଓଲଟା। ସେ ମୋଟେ ଡରୁନାହିଁ। କୃଷ୍ଣର ଆଉ ଏହା ଉପରକୁ ବୁଦ୍ଧିର ଦଉଡ଼ ନାହିଁ।

ନଜେ ପଳାଇବାକୁ ଆରମ୍ଭ କଲା। କାହୁଁ ଯିବ କୁଆଡ଼େ ? କଥାର ଫାଶ ପଡ଼ିଛି ତାହାର ମନ ଉପରେ! ଦେହ ଅବା କ'ଣ କରିପାରିବ ? ଏଣେ ଲାଜ ଘାରୁଛି।

ସେ ସ୍ଥିର କଲା ଯେ ଆଗେ ଚରିତ୍ରହୀନା ସ୍ତ୍ରୀ ଥିଲେ ବୋଲି ଶାସ୍ତ୍ର ପୁରାଣ ଲେଖିଛି। ଏବେ ଏଇ ଯେଉଁ ନମୁନାଗୁଡ଼ାକ ବାହାରିଲେଣି ତାଙ୍କୁ କ'ଣ ପାଇଁ ଓ କେମିତି ଚରିତ୍ରହୀନ କୁହାଯିବ।

ରାଧା ଖାଲି କହୁଛି ଯେ ସେ ହାଉଡ଼ା କୃଷ୍ଣକୁ ନେବ।......ବଡ଼ ଅଦ୍ଭୁତ କଥା। କୃଷ୍ଣ ସିନା ରାଧାକୁ ନଅନ୍ତା। କାହିଁକି ଅବା

ନେଇଥାନ୍ତା ? କୃଷ୍ଣ ଭଲ କି ତାହାର ବ୍ରହ୍ମଚର୍ଯ୍ୟ ଆଶ୍ରମ ଭଲ । ସେଥିରେ ରାଧାର ଅବା ଭୂମିକା କ'ଣ ?

ଚୁପ୍ ହୋଇ ଭାବନ୍ତି ଯେ ତିରିଶି ଓ ଚାଳିଶି ବର୍ଷର ପେଆର ଓଡ଼ିଶାରେ କେଉଁଠି, ଯେ ସେ ଯାଇ ଭଲମନ୍ଦ ବୁଝିବ ? ଏଠି ତ ଖାଲି ପନ୍ଦରରୁ ବାଇଶି ସାଙ୍ଗରେ ବାଇଶିରୁ ତିରିଶିର ପେଆର । ବାକି ସବୁ ଉଦ୍‌ଭଟ ।

ଯୁଗ ଓଲଟିଲା ବେଳକୁ ସ୍ନେହ ଲାଜର ଦୁଲାଳୀମାନେ ଏମିତି ସଫା, ସଚୋଟ ହୋଇ କଥା କହିଲେଣି । କହନ୍ତୁ—କିନ୍ତୁ ସେମାନେ କାହିଁକି ବଡ଼ବ କୃଷ୍ଣଙ୍କୁ ତାହାର ଚଲାବାଟରୁ ଖସାଇବେ ?

ଘରେ ବହୁତ ଭାବିଲି, ରାସ୍ତାରେ ବହୁତ ବୁଲିଲି । ବେଦମ୍ ହୋଇ ଗୁ' ଓ ଧୂଆଁ ଧରିଲି । ଶୋଇଲି—ଉଠିଲି ଓ ବ୍ୟସ୍ତ ହେଲି । କିନ୍ତୁ ସେଇ କଥା କେଇପଦ ମନ ଉପରେ ବାଜୁଥାଏ—ଭଲ ଖରାପ, ହାଉଡ଼ା, ହାଉଳା, ଯାହା ପଡ଼ୁ ସେ ଧରିବ ।

ନା, ଏମିତି ଲୋକଙ୍କୁ ଏଠୁ ବିଦା ନ କଲେ ନଚଳେ । ଏମାନେ ବଡ଼ ଦୁର୍ଦ୍ଦାନ୍ତ ।

କିନ୍ତୁ କ'ଣ କରାଯାଇପାରିବ ? ତାହା ଘରକୁ ଯିବା ବନ୍ଦ କଲେ ସେ ହୁଏ ତ ଆସି କୃଷ୍ଣ ଘରେ ଦେଖା ଦେଇପାରେ । ବାପାଙ୍କର ଶ୍ରାଦ୍ଧରେ ସେ ଆଗୁଆଗୁଏଁ କାମ କରି ଚାଲିଯାଇଛି—ଧନ୍ୟବାଦ ଦିଆ ନ ହେଲେ ବି ତାହାର ଖାତିର ନାହିଁ ।

ଏମିତି ଖାତିର ନ ଥିବା ଲୋକ ପ୍ରକୃତରେ ବଡ଼ ଦୁର୍ଦ୍ଦାନ୍ତ । ଏମିତି ଥିଲେ ହୁନ, ମୋଗଲ, ପଠାଣ, ଫିରିଙ୍ଗି—ସମସ୍ତେ ।

କାହାକୁ ଅବା ଭଲ ଲାଗେ ଧରାହେବାକୁ । ସେ ଏଣେ ପ୍ରତିଜ୍ଞା କଲାପରି ଅବା ଚହଲି ପରି ଠିକ୍ କରିଛି—ଧରିବ ଆଉ ପୋଷା ମନେଇବ ।

ନା, ହୋଇପାରିବ ନାହିଁ । ରାଧାକୁ ଉଚିତ ଶିକ୍ଷା ଦେବା ପାଇଁ ହବ । ମୁହଁଖୋଲ ସ୍ତ୍ରୀଲୋକଙ୍କର ଆସ୍ପର୍ଦ୍ଧା ସେମିତି କଡ଼ା କଥାରେ ସାଷ୍ଟମ କରିବାକୁ ହେବ । ସେଥିପାଇଁ ଦରକାର—ଦେଖାସାକ୍ଷାତ୍ ।

ଭଲ ପାଇବା ହେଉଛି ଗୋଟାଏ ଯୁଦ୍ଧ ।

ଦୁଇପକ୍ଷ ଦୂରରେ ଥିଲେ ଚିଠି ବା ଟେଲିଫୋନ ଅବା କବିତା ଦ୍ୱାରା କଣ୍ଠଟା କରାଯାଇପାରେ । ଦେହକୁ ଆଡ଼େଇ ଦେଇ ମନ ଦ୍ୱାରା ପରସ୍ପରକୁ ପରଖ କରାଯାଇପାରେ ।

କିନ୍ତୁ ଦୁଇ ପକ୍ଷ ପାଖରେ ଥିଲେ ଦେଖା ଓ କଥା ଛଡ଼ା ଅନ୍ୟ ଉପାୟ ନାହିଁ ।

ଦୂର ଯୁଦ୍ଧରେ ଦୁଃଖ ବେଶି ଆଉ ଲାଭ କମ୍ । ପାଖ ଯୁଦ୍ଧରେ ସୁଖ ବେଶୀ ଓ କଷ୍ଟ କମ୍ । ଯାହାହେଉ ପାଖରେ ତ ସେ ଅଛି ।

ସାହସ କରି କୃଷ୍ଣ ଚାଲିଲା ରାଧା ଘରକୁ । ଦେଖିଲେ ଦେଖନ୍ତୁ ସାହିବାଲା—ଘରବାଲା ଅବା ରିକ୍ସାବାଲା । ରାଧା ଯେତେବେଳେ ତାହାର ଇଜତ ଉପରେ ବଜାରର ଅପବାଦକୁ ଡ଼ରୁନାହିଁ କୃଷ୍ଣ କାହିଁକି ତାହାର ମର୍ଯ୍ୟାଦା ଉପରେ ସହରର କୁତ୍ସା ରଟନାକୁ ଡ଼ରିଯିବ ?

କୃଷ୍ଣ ଆଉ ଡ଼ରିଲା ନାହିଁ । କିନ୍ତୁ ମନ ଭିତରେ ବହୁତ ଡ଼ର । ତାହାର ଅଭିଆଡ଼ା ଜୀବନ ଉପରେ କାଳି ବୋଳି ଦେଉଛି ରାଧା । ଇଏ ହେଉଛି ସ୍ତ୍ରୀମାନଙ୍କର ଦୁସମନ ।

ସେମାନେ ଇଚ୍ଛା କଲେ ଧରିନେବେ । ମନ ହେଲେ ଛାଡ଼ି-ଦେବେ । କିନ୍ତୁ ଏମିତି ମଜ୍ଜାରେ କାଳି ବୋଳିଦେବେ ଯେ ଭବିଷ୍ୟତ ପୂରା ନଷ୍ଟ ।

ମଣିଷର ଗୋଟିଏ ସାଧାରଣ ଗୁଣ ହେଲା ଯେ ସେ ତାହାର ଭବିଷ୍ୟତକୁ ନଷ୍ଟ କରିବାକୁ ଚାହେଁ ନାହିଁ । ଯେତେ ଖରାପ ହେଲେ ବି ସେ ନିଜକୁ ଭଲ ବୋଲି ଦେଖାଇବାକୁ ଚାହେଁ । ଚୋର ବି ସାଧୁର ଭେକ ନିଏ । ବଦମାସ୍ ନିଜକୁ ଭଲ ବୋଲି ବୁଝାଏ । କୃଷ୍ଣ ବି ସେମିତି ଚାଲିଥିଲା ରାଧା ପାଖକୁ ନିଜକୁ ଭଲ ବୋଲି ପ୍ରମାଣ କରିବାକୁ ।

ସେ ସିନା ପ୍ରମାଣ କରିଥାନ୍ତା । କିନ୍ତୁ ରାଧା ତାକୁ ବାଧ୍ୟ କଲାଣି ପ୍ରମାଣ କରିବାକୁ ଯେ କୃଷ୍ଣ ତା'କୁ ଭଲପାଏ । ଇଏ ତ ଅଡ଼ୁଆ ନୁହେଁ—

କୃଷ୍ଣ ରାଧାକୁ ଭଲପାଏ ବୋଲି କହିବ କେମିତି ? କୃଷ୍ଣର ଦେହ ସିନା ରାଧାକୁ ଚାରଫ୍ କରୁଛି । କୃଷ୍ଣର ମନ ସେଥିକି ସମର୍ଥନ କରୁନାହିଁ ।

ରାଧା ଥରେ ପଚାରିଲା—କହିଲ, ତୁମେ କ'ଣ ମତେ ଭଲପାଅ ?

—ତୁମେ କ'ଣ ଭାବୁଛ ?

—ମୁଁ ଭାବୁଛି ଯେ ତୁମେ ମତେ ଭଲ ପାଅ ନାହିଁ । ହୁଏତ ଟିକିଏ ମଜ୍ଜା ଖୋଜୁଛ ।

—ଏଁ । କୃଷ୍ଣ ମଜ୍ଜା ଖୋଜୁଛି ? କେବେ ନୁହେଁ । ସେ ଭଲପାଏ ।

—ଆଚ୍ଛା ମୁଁ ତୁମକୁ ଭଲପାଏ । ତମେ ଯଦି ମତେ ଭଲପାଇଲ ତାହାହେଲେ ତ ଆମର ମିଳାମିଶାର ଶ୍ରେଷ୍ଠ ଅଧ୍ୟାୟଟି ପୂରା ହେଇଗଲା । ତା' ପରେ ଆମେ ଆଗେଇବା । ଭଲ ପାଅ ତ ?

—ହଁ । ତେବେ ମତେ ଭାରି ଡ଼ରମାଡ଼ୁଛି । ଭଲପାଇଗଲେ କ'ଣ ବିପଦ ଆସିବ ।

—ଆଚ୍ଛା, ତାହାହେଲେ ତୁମେ ବ୍ରହ୍ମଚାରୀ ନୁହଁ । ତୁମର ଚରିତ୍ର ବୋଲି କିଛି ନାହିଁ ।

—ଅସମ୍ଭବ । ମୋର ଚରିତ୍ର ଭଲ ।

—ତୁମେ କହୁଛ ଯେ ବ୍ରହ୍ମଚାରୀ ସ୍ତ୍ରୀ ଲୋକଙ୍କ ସାଙ୍ଗରେ ମିଶି ଆପଣା ବ୍ରହ୍ମଚର୍ଯ୍ୟକୁ ହାତମୁଠାରେ ଜାବୁଡ଼ି ଧରି ତାହାର ବ୍ରହ୍ମଚର୍ଯ୍ୟ ଆଶ୍ରମକୁ ଫେରିଯିବ । ବଡ଼ ବଡ଼ ଋଷି ବିଶ୍ୱାମିତ୍ର ଇତ୍ୟାଦି ଯେଉଁଥିପାଇଁ ଫେଲ ମାରିଗଲେ ତାକୁ ସମ୍ଭବ କରିଛନ୍ତି କୃଷ୍ଣାନନ୍ଦ ଜୀ ।

—ହସି ପାର । କିନ୍ତୁ ଆମେ ଏମିତି ସହର ବଜାରରେ ଥିବାରୁ ସାଧୁ ବିଶ୍ୱାମିତ୍ର ମହାରାଜ ହେଇପାରିଲୁ ନାହିଁ । ଖାଲି ହିମାଳୟ ପାଖରେ ରହିବାର ସୁବିଧା ହେଲେ ମୁଁ ତୁମକୁ ପ୍ରମାଣ କରିଦେବି ।

—ଏକଦମ୍ ଠିକ୍ । ଅନେକ ଲୋକ ଦିଲ୍ଲୀ ଯାଉଛନ୍ତି ପ୍ରଧାନମନ୍ତ୍ରୀ ହେବାପାଇଁ । ଆଉ ସେଠି ହଉଛନ୍ତି କିରାନି, ମଜଦୁର ଓ ଭିକାରୀ ।

ହିମାଳୟ ପାଖରେ ଏମିତି କେଜାଣି କେତେ ବୁଲି ବୁଲି ଖାଲି ସଦାବ୍ରତରୁ ରୋଟି-ଡ଼ାଲି ଖାଉଛନ୍ତି । ବଇଶିମ କାମ ଆଗେଇ ପାରୁନାହିଁ ।

—ମୁଁ ହୋଇପାରିବ । ମୋର ଭଲ ଆଇଡ଼ିଆ ଅଛି ।

—ତାହାହେଲେ ଆସ ବାବାଜୀ ହେବା । ମତେ ଶିଷ୍ୟ କରି ନେଇଯାଅ ।

—ମାନେ ବ୍ରହ୍ମଚର୍ଯ୍ୟ ଆଶ୍ରମ ଛାଡ଼ି ମୁଁ ପୁଣି ଗୃହସ୍ଥାଶ୍ରମର ଯୋଡ଼ମଣ୍ଡଳୀ ବଜାଇବି । ଖାଇବାକୁ ଦବ କିଏ ?

—କାହିଁକି ଭଗବାନ୍ ?

—ଭଗବାନ ଏସବୁ ଯୋଡ଼ାଯୋଡ଼ ପସନ୍ଦ କରନ୍ତି ନାହିଁ । ବ୍ରହ୍ମଚର୍ଯ୍ୟ ହେଲେ ସେ ସମ୍ଭାଳିବେ ବ୍ରହ୍ମଚର୍ଯ୍ୟ ନ ହେଲେ ସେ ଦାୟିତ୍ୱ ସଂସାରର । ଆଉ ତୁମକୁ କାହିଁକି ଶିଷ୍ୟ କରିବି ? ତୁମେ ପରମାର୍ଥ କଥା କଥା କ'ଣ ବୁଝ ?

—ମୁଁ—ମୁଁ ? ଏତିକି ବୁଝିଛି ପେଟକୁ ଦାନା ଖାଇବା । ଭଲ ନ ମିଳିଲେ ମନ୍ଦକୁ ଖାଇବା । ଏଣେ ପେଟରେ ଭୋକ ଆଉ ପାଟିରେ ଓଲଟା କଥା କହିବାରେ ଲାଭ ନାହିଁ । ଠିକ୍—ଠିକ୍ କୁହ ? ତୁମେ ମତେ ଭଲ ପାଅ ?

—ମୁଁ ତୁମକୁ ଶ୍ରଦ୍ଧା କରେ । ସ୍ନେହ କରେ ।

—ବହୁତ ବଡ଼ ଯୋଗୀ ଜନ ତୁମେ । ତୁମେ ଭଲ ପାଇବା, ଶ୍ରଦ୍ଧା, ସ୍ନେହ, ଆଦି ବେଶ୍ ଠଉରାଇ ପାରୁଛ । କୁହ ଭଲ ପାଅ କି ନାହିଁ ?

କୃଷ୍ଣ ଚୁପ୍ ରହିଲା । ତାହାର ମୁହଁରୁ ଝାଳନୋପ ବାହାରୁଥାଏ । ଏଇ ସ୍ତ୍ରୀଲୋକମାନେ ଘର ଦୁଷ୍ଟ । ସଂସାର ଗୃହୀଙ୍କୁ ଜଣାଇ ଅଛି । ଏମାନଙ୍କୁ ସେତିକି ଭରସା ମଧ୍ୟ ମିଳିବ ନାହିଁ । କୃଷ୍ଣ ଆସିଥିଲା କ'ଣ ଠିକଏ ଦେଖି କଥାଭାଷା ହେବାପାଇଁ ଯେ ଏଇ ମହିଳାଟି ତାଙ୍କୁ ଧମକାଇ ବ୍ଲାକମେଲ କଲଣି ।

—କିଛି କହିଲ ନାହଁ ।

କୃଷ୍ଣ ଚୁପ୍ ହୋଇ ରହିବାରୁ କହିଲି—ଆଚ୍ଛା, ତୁମକୁ ଆଜ ଦୁଇଟି ନୂଆ ଜିନିଷ ଦିଆଯିବ। ଘରେ ଯାଇ ଭାବିବ ମତେ ଭଲ ପାଇପାରିବ କି ନାହିଁ। ଯଦି ଜାଣିବ ଯେ ତୁମେ ମତେ ଭଲ ପାଇ ପାରୁ ନାହିଁ ତାହାହେଲେ ଆଉ ଆସି ମୋର ସମୟ ନଷ୍ଟ କରିବ ନାହିଁ। ତିରିଶ ବର୍ଷ ପୂରିବା ଉପରେ। ତୁମମାନଙ୍କର ମନ ନେବାକୁ ଆଉ ଇଚ୍ଛା ନାହିଁ। ତୁମମାନଙ୍କର ଦେହ ଅଛି—ମନ ନାହିଁ। ଯଦି ମନ ଥାଏ, ତେବେ ତୁମର ବୁଦ୍ଧି ନାହିଁ। ତୁମେମାନେ ଗୋରୁ, ଘୋଡ଼ା ପରି ମଣିଷ —ମଣିଷ ହେବାକୁ ବହୁତ ଦିନ ଲାଗିବ। ଏ ଜନ୍ମରେ ନୁହେଁ।

—କାହିଁକି ?

—ସହାନୁଭୂତି ଘଟଣା ବୁଝିବାର ବା ଦେଖିବାର—ଦଶ ବର୍ଷରେ ବାହାରେ ନାହିଁ। ସେମିତି ଭଲ ପାଇବା ମଧ୍ୟ ପାଞ୍ଚ ପଚିଶି ବର୍ଷ ପରେ ବାହାରେ ନାହିଁ। ମୋର କଥାର ଜବାବ ବହୁତ ଦିନ ପରେ ଦେଲେ ତୁମର ବା ମୋର ସୁବିଧା ହବ ନାହିଁ। ଜାଣିଥାଅ।

—କ'ଣ ?

—ଗୋଟିଏ ଭବିଷ୍ୟତ ବାଣୀ କହି ଦେଉଛି। ମନେ ରଖିଥିବ।

—କ'ଣ ?

—ଏମିତି ହୁଏତ ଅତି ଅଳ୍ପ ଦିନରେ ମୋ'ଠାରୁ ବହୁତ ନରସ; ନକମା କେହି ଆସି ତୁମର ଶୁକୁଶୁକୁ ମନର ଓର ଜଣି ଘର ଭିତରେ ପଶିଯିବ। ଆଉ ଉଠିବ ନାହିଁ। ସେତେବେଳେ ଜାଣିବ—ମନ କ'ଣ ଓ ଦେହ କ'ଣ ?

—କାହିଁକି ?

— ଏବେ ପରା ମନ ବ୍ୟେଭ କରିବାକୁ ଅନେକ ବାହାରିଲେଣି। ମନ ସେ ତା'ର ରଖିଥାଉ। ମୋ ପାଇଁ ଦେହଟା ଯଥେଷ୍ଟ। ଖାଇବା ପିନ୍ଧିବା ଯଥେଷ୍ଟ। ଭଲ ମିଳିଲେ ରହିବା। ଖରାପ ହେଲେ ବାଟ କାଟିବା ଏ ପ୍ରକାର ସ୍ତ୍ରୀମାନଙ୍କୁ ଦେଖିନାହଁ।

—ସତରେ ?

—ସତ ମିଛ ନିଜ ଜୀବନରେ ଘଟିଲେ ବୁଝି ପାରିବ । ଚୋର ପାଚେରି ଡେଇଁ ଘର ଭିତରେ ପଶେ । ସେମିତି ଚୋରୁଣୀ ମଧ୍ୟ ମେଲା ଦୁଆର ବାଟେ ଆସିପାରେ । ସେଇଟା ଗୋଟାଏ ସହର—ବଣ ନୁହେଁ । ବଣରେ ଅନେକ ସୁବିଧା ଅଛି । ଲୋକଗହଳି ଭିଡରେ ସାଧୁ ବାହାରିଲେ କେଇ ଜଣ ? ଜାଣିଛ ?

—ନା ।

—କାହିଁକି ଜାଣିବ ? ତୁମର ବୁଦ୍ଧି ଅଛି କାହିଁ ? ଦେହ ତେଜିଲେ ମନ ତେଜେ । ମନ ତେଜିଲେ ବୁଦ୍ଧି ତେଜେ । ତୁମେ ଅନେକ କଥା କରି ଦେହକୁ ଦବାଇ ଦେଇଛ । ମନ ସେଥିପାଇଁ ଦବି ଯାଇଛି । ବୁଦ୍ଧି ମାଙ୍କଡ଼ଟେ ମରି ପଡ଼ିରହିଛି । କ'ଣ ଠିକ୍ ?

—ଭାବିଲେ କହିବି ।

—ହଉ, ଭାବିବ । ମନେ ମନରେ ପାଖରେ ବସାଇ ଭାବିବ । ଯାହା ପଚାରିବା କଥା ସେତକ ମନ ପାଖରେ ବସିଥିବା ରାଧାକୁ ପଚାରିବ । ତାହାହେଲେ ସବୁ ଜବାବ ପାଇଯିବ । ତୁମେ ବୁଝିପାରିବ ଯେ ତୁମେ ବ୍ରହ୍ମ-ଆଗ୍ରହୀ ନୁହେଁ । ତୁମେ ହେଉଛ ବିକୃତ ବ୍ରହ୍ମଗ୍ରସ୍ତ । ତୁମର ବ୍ରହ୍ମ ହେଉଛି ମିଛ ।

—ଏଁ ...

—ସତ୍ ବ୍ରହ୍ମ ସତ୍‌ରେ ରହିଲେ । ସେ ସତ୍ ଦେହରେ ରହେ । ତାହାର ମନ ସତ୍ । ତାହାର ବୁଦ୍ଧି ସତ୍ । ତୁମେ ଜଣେ ନକଲି ଲୋକ । ତୁମର ବ୍ରହ୍ମ, ଦେହ, ମନ ଓ ବୁଦ୍ଧି ସବୁ ନକଲି । ସେଥିପାଇଁ ତୁମକୁ କୁହା ହେଉଥିଲା ଆସି ଏଇଠି ଧରାଦେବା ପାଇଁ ।

—ହେ, ମୋର ଭାବମୂର୍ତ୍ତି ନଷ୍ଟ ହେଉଛି । ମୁଁ ତୁମକୁ ଭଲ ପାଏ ବୋଲି କ'ଣ ତୁମେ ଯାହାସବୁ କହିବ ସବୁ ମାନିବ ?

—ଆଉ କ'ଣ କରିପାରିବ ? ଯିଏ ଭଲ ପାଇବାକୁ ରାଜି ସିଏ ସହିବାକୁ ରାଜି । ତୁମର ବାପା, ଅଜା ଓ ତାଙ୍କର ବାପା ଭଲ ପାଇଥିଲେ ବୋଲି ସବୁ ସହି ସମ୍ଭାଳି ତୁମପାଏ ଆସି ଗୋଟିଏ ନକଲି ଲୋକ କାଟି ଛାଡ଼ିଲେ ।

—ଥାଉ, ମତେ ବିରକ୍ତ ଲାଗୁଛି ।

—କାହିଁକି ତୁମେ ବ୍ରହ୍ମଚାରୀ ହେଲ ? ଯଦି ହେଲ ତେବେ ନକଲି ବ୍ରହ୍ମଚାରୀ କାହିଁକି ହେଲ ? ହେଉ କ'ଣ ଅବା ସଂସାରଟା ଦାଲ୍ଲୋଳ କରି ଦେଲ ଯେ ଆପଣା ମନକୁ ସାଧୁ ବନି ନିଜକୁ ପୀଡ଼ା ଦେଉଛ ।

—କ'ଣ ଉପାୟ ?

—ଏବେ ବି ବେଳ ଅଛି । ସମସ୍ତଙ୍କ ପରି ହୁଅ । ଘର କର । ସଂସାର କର । ପୁଅ ଝିଅ କର । ତାଙ୍କଠାରୁ ଗାଳିମାଡ ସହ । ସ୍ତ୍ରୀ ଠାରୁ ମାଡ଼ଗାଳି ସହ । ସଂସାରର ବଡ ବଡ଼ ମଣିଷଙ୍କ ଠାରୁ ତୁମେ ଶ୍ରେଷ୍ଠ ବୋଲି ଶୁଣି ତାକୁ ହଜମ କର ।

—ତେବେ ମୁଁ ପୁଣି ଥରେ ଓଲ୍ଟା ହୋଇ ଆରମ୍ଭ କରିବି ? ମୋର ଏଇ ପନ୍ଦର କୋଡ଼ିଏ ବର୍ଷ ଅକାରଣ ହୋଇଗଲା । ତୁମେ କ'ଣ କରି ପାରିବ ?

—ମତେ ଛାଡ଼ିଦିଅ । ଖୋଜିଲେ ତୁମପରି ଲୋକ ମିଳିଯିବେ । ହୁଏତ ତୁମେ ମିଳିବ ନାହିଁ । ସବୁ କାଉ ସମାନ ବୋବାନ୍ତି । ସବୁରି ଘର ଇନ୍ଦ୍ରଭୁବନ । ସମସ୍ତଙ୍କର ପୁଅଝିଅ ପୃଥିବୀରେ ଭରି ରହିବ ।...... ଦିନେ ମୁଁ ସେମିତି ହୋଇଥିଲି । ଆଜି ମୁଁ ନକଲି ସାଧୁ ସାଙ୍ଗରେ କଥା କହୁଛି ।

— କ'ଣ ହୋଇଥିଲି ?

—ପିଲାଦିନୁ ମୁଣ୍ଡରେ ଲୁଗା ଦେଇ କେରବାଡ଼ ଭିତରେ ସ୍କୁଲକୁ ଯାଇଛି—ସେତେବେଳର ସିନେମା, ଥିଏଟର ଦେଖିଛି । ବହୁତ ଜଗାରଖା ଓ ହେପାଜତରେ ଚଳିଛି । ଆଉ ନୂଆ ରେଡ଼ିଓ ଆସିଲାବେଳେ ସେଇ ସିନ୍ଦୂକ ପରି ରେଡ଼ିଓକୁ—ଆଜି—ନିଶ୍ଚେ ଆଜି—ଅଣାଇବା ପାଇଁ ମୋର ବାପା ମା'ଙ୍କୁ ଧମକ ଦେଇଛି ।.... ହୁଏ ରେଡ଼ିଓ ବାଜିବ ନ ହେଲେ ରାଧା ମରିବ ।

—କ'ଣ ହେଲା ?

—ରେଡ଼ିଓ ଆସିଲା । ରେଡ଼ିଓ ବାଜିଲା ରାଧା ଗାଇଲା । ବାପା ମରିଗଲେ । ସେଇ ରେଡ଼ିଓକୁ ବାପା ମଲାପରେ ଛାଡ଼ିଦେଇ ଆସିଲୁ ।

ଏଠି ସରକାରୀ କୋଠି ନୁହେଁ । ନିଜର ଗହଣା ବିକି ଘରଭଡ଼ା ଦେବୁ ସେଠି ରଖିବୁ କ'ଣ ? ତୁମେ ତ ସେଇ ହିସାବରେ ବହୁତ ଭାଗ୍ୟବାନ୍ । ତୁମର ଖଣ୍ଡେ ଘର ଅଛି । କିଛି ଲୋକ ଅଛନ୍ତି । ତୁମର ଧାନ ଆସୁଛି । ତୁମେ ମୋରି ପରି ଅବା ଆମରି ଅବସ୍ଥାରେ ପଡ଼ିଥିଲେ ଚାରିମାସ ବି ବଞ୍ଚି ନ ଥାନ୍ତ ।

—ଆଉ ?

—ମରିଯାଇଥାନ୍ତ । ତୁମକୁ ଭଗବାନ୍ ବଞ୍ଚାଇ ରଖିବାକୁ ସ୍ଥିର କରିଥିଲେ । ଏଇଠି ଆସି ମତେ ଆଶ୍ୱାସନା ଦେବ ବୋଲି । ମୁଁ ବି ତ ଭଗବାନଙ୍କୁ ପ୍ରାର୍ଥନା କରେ । ସେ ତ ଆସି ମୋ' ସାଙ୍ଗରେ ଘର କରିବେ ନାହିଁ । ସେ ମତେ ଜଣେ ଖାଉନ୍ଦ ଦେବେ ।

—ଖାଉନ୍ଦ ?

—ହଁ । ସବୁ ପଛୁଆ ସମାଜରେ ସେ ହେଉଛନ୍ତି ସ୍ତ୍ରୀର ଖାଉନ୍ଦ —ମାଲିକ—ରାଜା । ବୁଝିଲ ସନ୍ତୁ କିଷନ ଜୀ, ତମେ ମୋର ଖାଉନ୍ଦ ହେଇପାର । ହେବ କି ?

—ହେ, ସତ କଥା କହିଲେ ମୋର ଇଚ୍ଛା ଯେ ସ୍ତ୍ରୀମାନେ କଅଁଳ ଓ କୌତୁକିଆ ହେବେ । ତୁମେ ଯେମିତି ସଅଁବାଳୁଆ ପରି ହେଉଛ ନା, ତୁମକୁ ଦେଖିଲେ ଆଗ ମନ ଭିତରେ ହୁସିଆର—ହୁସିଆର ଡାକ ଉଠୁଛି ।

— ତୁମେ କଅଁଳିଆ ଝିଅ ଖୋଜୁଛ । ଆଚ୍ଛା । ତମ ସାଙ୍ଗରେ ସେମିତି ଚଳିବା । କଥା କ'ଣ କି ତୁମର ବୁଦ୍ଧି କମ୍ ହେଉଛି । ଟାଣ ଟାଣ କଥା କହିଲେ ବୁଦ୍ଧି ଖୋଲିବ ବୋଲି ଭାବିଥିଲି ଯେ ତୁମେ ରାଜି ନୁହଁ ।...ତୁମେ ଜଣେ ରୋଗୀ । ତୁମକୁ ନିଶାରେ ଅଚେତ୍ କରି ଅପରେସନ କରିବା ଦରକାର ।

—ଛାଡ଼ ଛାଡ଼ । ମୁଁ କିଛି କହୁନାହିଁ । ବୋଲି କହିବାରେ ଲାଗିଗଲଣି । ଆମରି କଥା ଅଛି ଯେ---ପ୍ରିୟାଣାଂ ପ୍ରହାରଂ ସାରଂ ।

—ମାନେ ।

—ନିଜ ଲୋକଙ୍କୁ ମାଡ଼ ଚଢ଼ାଇବ ।

—ମୁଁ ତ ସେଇଆ କରୁଥିଲି ।

—ଆରେ ନା । ମୁଁ ତୁମକୁ ପିଟିବା ଦରକାର ।

—ସିଏ ତ ଗୋଟିଏ ଗୌରବର କଥା ହୁଅନ୍ତା ତୁମେ ମତେ ଶାସନ କରିପାରିଲେ ପରି ତେଜର ଅଧିକାରୀ ହୁଅନ୍ତ । କିନ୍ତୁ ସନ୍ଥଜୀ । ଏଜୀବନରେ ତୁମେ ସେ ସୁବିଧା ପାଇପାରିବ ନାହିଁ । ତୁମେ ଥାର୍ଡ଼ କ୍ଲାସକୁ ଚାଲିଗଲେଣି ।

ବିରକ୍ତ ହୋଇ କୃଷ୍ଣ କହିଲା—ଥାଉ । ଏସବୁ କଥା । ଅନ୍ୟ କିଛି ।

—କଥା ଛଡ଼ା ଅନ୍ୟ କିଛି ପାଇଁ ତୁମେ ଅଯୋଗ୍ୟ । ଚା’ ଖାଇବ ?

—ହଉ ।

—ଆଉ କିଛି ?

—ନା । ଖାଲି ଚା’ ଖାଇବା ଭଲ । ଅନ୍ୟ ଜିନିଷ ଖାଇବା ହାତ ଧୋଇବା ଓ ମୁହଁ ପୋଛିବା—ଏସବୁ ମତେ ଭଲ ଲାଗେ ନାହିଁ ।

—ତମର ଭଲ ଲାଗିବା ଉପରେ ଯେଉଁ ଦିନ ସଂସାର ଚାଲିବ ସେଦିନ ତୁମେ ହୋଇଥିବ ଜଣେ ବଡ଼ ମଣିଷ । ବଡ଼ ମଣିଷ ଛୋଟରୁ ଉଠି ଉଠି ହୁଏ ନାହିଁ । ସେ ମୂଳରୁ ବଡ଼ ହୋଇଯାଏ ।

ଚା’ ଆସିଲା । କୃଷ୍ଣ ଆଉ କପକୁ ହାତ ନ ବଢ଼ାଇ କହିଲା—ତଳେ ଥୋଇ ଦିଅ । ମୁଁ ନେବି ।

—ବାଃ, ପଦେ କଥାରେ ଏତେ ଛଳ ? ଯାହା ହେଉ ଭଲ ହୋଇଛି । ଆମେ ଆମ ଭିତରେ ଗୋଟିଏ ବନ୍ଧୁତା ଗଢ଼ି ପାରିଛୁ ।

—କ’ଣ ତୁମେ ମୋର ବନ୍ଧୁ ?

—ଆଉ କ’ଣ ? ତୁମର ବୋଲକରା ?

—ବନ୍ଧୁ ନା ବୋଲକରା ? ପଚାରୁଛ । ଏହାର ଜବାବ ନିଜେ ହେଲେ ଭଲ ହେବ ।… ଆଚ୍ଛା ମୋର ଜନ୍ମ ଛବିଶି ଅକ୍ଟୋବରରେ । ସେ ବର୍ଷ ଥିଲା ଅଶିଣ ଶେଷ ।… ମୋତେ ଜନ୍ମଦିନକୁ କ'ଣ ଦେବ ?

—ମୋର ଏସବୁ ଦିବାନବାରେ ଉତ୍ସାହ ନ ଥାଏ । କାରଣ ମୋର ଦେବା ପାଇଁ କିଛି ନାହିଁ ।

—ଦିବା ନବା ନ ଥିଲେ ସଂସାର ଚାଲିବ କେମିତି ? ସଂସାରଟା ହେଉଛି ଦିଆନିଆର ବେପାର । ତୁମେ ମତେ କ'ଣ କିଛି ଦିବ ନାହିଁ ?… ଖଣ୍ଡେ ଭଲ ସାଢ଼ୀ ଗୋଟିଏ ଛୋଟ ଗହଣା ?

—ଦିବା ଉଚିତ୍ ସେ କେତେବେଳେ ହେଲେ ମୋ' ପାଖରେ ପାଞ୍ଚ ଦଶ ଟଙ୍କା ବଳି ନ ଥାଏ । ଯାହା ଆସେ ସେତକ ମୋ' ପାଖରୁ ପଳାଇ ନ ଗିବା ଯାଏ ସତେ କି ତାକୁ ଭଲ ଲାଗେ ନାହିଁ ।

—ଭଲ ମନ୍ଦ, ବିପଦ ଆପଦରେ କ'ଣ କରିବ ? କିଛି ରଖୁ ନାହିଁ ।

—ରହିଲେ ସିନା ରଖିବ । ସାରୁପତ୍ର ପାଣିକୁ ଧରି ରଖିବା ପରି ମୁଁ ଟଙ୍କା ରଖେ ।

—ଚଳୁଛ କେମିତି ?

ଏମିତି ଦାନରେ । ଯିଏ ଯାହା ଯେତେବେଳେ ଦେଲା, ସେଥିରେ ଚଳେ । କିଛିଟା ଥାଏ କରଜ । ଯେଉଁ କରଜ ଶୁଝା ଯାଇପାରିଲା ନାହିଁ । ତାକୁ ମୁଁ କହେ ଦାନ !

ରାଧାର କଣ୍ଠ ସ୍ୱର ବସିଗଲା ଯେ ଏଇ ସଂସାରରେ ଏମିତି ଅନେକ ଲୋକ ସବୁଥାଇ ମଧ୍ୟ ହତଭାଗ୍ୟ । ବିଚରା କିଷନ ଜୀ, ସଞ୍ଚୟ ନ ଥିବାରୁ ଠିକଏ ଦମ୍ଭରେ ଚଳି ପାରୁ ନାହିଁ । ସମସ୍ତଙ୍କୁ ଡରି ଡରି ରହୁଛି ।

—ହଉ, ମୁଁ ସେମିତି ଅନ୍ଦାଜରେ କହୁଥିଲି । ମୋର ଜନ୍ମଦିନକୁ ଆସିବ । କ'ଣ ଖାଇବ ? ମାଂସ ଭରିଆନ ନା ମାଛ ନା ଦୁଇଟା ଯାକ ?

—ହେଉ, ମୁଁ ଏଠି ବସି ଭୋଜନ ମାରିଲେ ଲୋକେ କ'ଣ କହିବେ ? ତୁମକୁ ନିନ୍ଦା ହେବ ।

—କାହିଁକି ?

—କହିବେ ଯେ କୃଷ୍ଣ ମଇଜ କରୁଛି । ଖିଆପିଆ କର ।

— କହନ୍ତୁ । ସେଇଟା ତୁମର ଓ ମୋର ସମ୍ବନ୍ଧ ।

—ହେଲେ ବି ତୁମର ଓ ମୋର ଚରିତ୍ର ଉପରେ ସେଇଟା ଆଘାତ । ··· ମତେ ଭାରି ଡର ମାଡ଼ିବ ।

—ତୁମର ଚରିତ୍ର କ'ଣ ଭଲ—କେଉଁଦିନ ଥିଲା ?

ଆଜି କ'ଣ ଖରାପ ?

—ଓ, ଏମିତି ସମସ୍ତଙ୍କୁ ଓ ସମସ୍ତଙ୍କର ସବୁ କଥାକୁ ଡରି ଚରିତ୍ରକୁ ସଜାଡ଼ୁଛ ?

ହଁ, ତ ।

— ଆହା, ଏଇଆ କରି ଦଳେ ଲୋକ ଉଜୁଡ଼ି ଯାଉଛନ୍ତି । ଲୋକଙ୍କ କଥାରେ ସାଧୁ ବନିବା ପାଇଁ ସମସ୍ତଙ୍କୁ ଡରି ରହୁଛନ୍ତି । କିନ୍ତୁ ଚରିତ୍ର କେଉଁଠି ହେଲେ ମଧ୍ୟ ଗଢ଼ି ହେଲା ନାହିଁ । ନିଜେ ନିଜ ପରି ହେବା ହେଉଛି ଚରିତ୍ର । ଆସ, ମୁଁ ସଜାଡ଼ି ଦେବି ।

ଇଏ କିଛି କାମ ନୁହେଁ । ଶୁଣି ଦେଖି ଚରିତ୍ର ଗଢ଼ିବା ସମ୍ଭବ ନ ହେଲେ ବି ଅନେକ ଲୋକ ସେମିତି ଚରିତ୍ରକୁ ଗଢ଼ିବାରେ ଲାଗିଥାନ୍ତି । ସ୍କୁଲର ଚତୁର୍ଥ ଶ୍ରେଣୀ ପିଲାର ଚିତ୍ରାଙ୍କନ ଓ ହାତକାମ ପରି ।

ମୂଳଆକୁ ପାଏ ନାହିଁ । ମୂର୍ଖକୁ ବି ପାଏ ନାହିଁ । ସେ ଗୃହେଁ ସଂସାରକୁ ଚଳାଇବାକୁ ଆହା ବିଚରା—ଖାଲି ଖବର କାଗଜ ପଢ଼ି, ସଭାର ବକ୍ତୃତା ଶୁଣି ଓ ସାଙ୍ଗ ସାଥୀ ମେଳରେ ଏଣ୍ଡୁ ତେଣ୍ଡୁ ମତ ଦେଇ ସଂସାର ଗଢ଼ୁଛି ବୋଲି ଭାବେ ।

ବର୍ଷା ଦିନ ଆଗରୁ ଚଢ଼େଇ-ବସାରୁ ଛୁଆ ବାହାରି ଖଣ୍ଡି ଉଡ଼ା ଦେଇ କେଇଟି ଦୁର୍ଘଟଣାରେ ମରନ୍ତି ଓ କେଇଟି ଚଢ଼େଇ ହୋଇ

ଯାଇ ଉଡ଼ି ବୁଲନ୍ତି । ତାଙ୍କର ଖବର ଆକାଶରେ ଅବା ପୃଥିବୀରେ ଅବା ମଣିଷ ପାଖରେ ନ ଥାଏ । କିନ୍ତୁ ଖବର ରଖନ୍ତି । ବିଲେଇ, କୁକୁର ଓ ଛଞ୍ଚାଣ ।

ସେମାନେ ତାଙ୍କର ଚଳଣକୁ ଖୁବ୍ ସଜାଡନ୍ତି । ମାଆ ବି ବହୁତ ପରିଶ୍ରମ କରେ । ଗାଁର ସ୍କୁଲ ମାଟ୍ରିକ୍ କାଢ଼ିଲା ପରେ ଚଢ଼େଇ ମାଆ ଯଥେଷ୍ଟ ଦେଇଯାଏ । ଇଏ ମଧ୍ୟ ଈଶ୍ୱରଙ୍କର ଭିଆଣ ।

ସେଇ ଅନେକ ଅଗାଡ଼ ଓ ବହୁତ ଅନାଡ଼ ଆଣି ଥୁଡ଼ ଦେଇଯାନ୍ତି । ସେଇ ଅଶାନ୍ତ ବହୁରୂପୀ; ମାଇଚିଆ, ଡରୁଆ ଆଦି ଅନେକ କିସମର ବସ୍ତୁ ।

ଡରୁଆ ଜନ୍ମ ଈଶ୍ୱରଙ୍କର ଇଚ୍ଛା । ଡରୁଆ ମଣିଷ ସେଇ ଈଶ୍ୱରଙ୍କର ସୃଷ୍ଟି । ଡରୁଆ ନ ଥିଲେ ସଂସାର ଅଚଳ ହୋଇଯିବ । ମଣିଷର ଜୀବନ ଓ ଜୀବନର ସ୍ୱପ୍ନ ବୃଥା ହୋଇଯିବ ।

ଆଉ ଡରୁଆମାନେ ନିଜକୁ କାଡ଼ୁଆ ବୋଲି ପ୍ରଚାର ନ କଲେ ସୃଷ୍ଟିଟା କେମିତି ହାସ୍ୟ ରସାତ୍ମକ ହୋଇପାରିବ ?

ପଞ୍ଜାବରେ ବାଲଟ ଓ ବୁଲେଟର ବଳ କଷାକଷି ହୋଇଗଲା । ନେପାଳୀ ଗୁର୍ଖା ନେପାଳ ବାହାରେ କେବେ ହେଲେ ଅନ୍ୟ ଦେଶର ସ୍ତ୍ରୀ ସହିତ ଦନସ୍ତ ହୋଇ ନାହାଁନ୍ତି । ଉତ୍ତର ପ୍ରଦେଶରେ ଏବେ ବି ଜଣେ ଅସୀମ ପତିଭକ୍ତିର ନିଦର୍ଶନ ପାଇଁ ସହମରଣ ଘେନୁଛନ୍ତି । ଓଡ଼ିଶାରେ ଡର ବଢ଼ୁଛି — ତେଣୁ ଭକ୍ତ ଓ ତେଉଁରିଆ ବଢ଼ୁଛି ।

ସାଧା ଯାଇଥିଲି ଘର ଭିତରକୁ । ଆସି କହିଲି—ମନେ ରଖିବ ମୋର ଜନ୍ମଦିନ କଥା । ସେଦିନ ମୋର ପରୀକ୍ଷା ।

— କି ପରୀକ୍ଷା ?

ସେ ଦିନ ଜାଣିବ ଯେ ତୁମର ମୁଁ ଯେଉଁ ଅଟକଳ ନେଇଥିଲି କେତେ ଭୁଲ ଓ କେତେ ଠିକ୍ ?···ଆସିବ ଆଉ ଶୁକ୍ରବାର । ଆଠଦିନରୁ ଅଧିକ ଅଛି ।

କୃଷ୍ଣ କହିଲା ଛୁଟି ପାଇଁ । ତାହାର ଗୋଟାଏ ଜରୁରୀ କାମ ଥିଲା ସେ—ଭୁଲିଯାଇଛୁ ।

—ହଉ । ସେ ଦୋଷ ଗପୁଡ଼ୀର । କାହାର ସୁବିଧା ଅସୁବିଧା କଥା ରାଧା ଭାବିପାରୁ ନାହିଁ । କ୍ଷମା ଦେବ—କଷନ ଜୀ ।

କଷନ ଜୀ ଏଇ ସୁବିଧା ଦେଖି ପାର । ନିଜ ଘରେ ମସିଣାରେ ଗଡ଼ ଏଣ୍ଟୁ ତେଣ୍ଟୁ ଭାବିବା ଢ଼େର ଭଲ । ଏଇ ସ୍ତ୍ରୀ ଲୋକଙ୍କଠାରୁ ଯେତେ ଦୂରରେ ରହିବ ସେତେ ମଙ୍ଗଳ ।

ଆପଣା ମନକୁ ସିଆଣିଆ ଲୋକେ କାଦୁଅଠାରୁ ଦୂରରେ ନିଜକୁ ରଖି ବହୁତ ତତ୍ତ୍ୱ ଶୁଣାନ୍ତି । ବଣ ଜଙ୍ଗଲର ସାଧୁମାନେ ଜୀବନ କଥା ନ ଜାଣି ଗୁଡ଼ାଏ କଥା କହନ୍ତି । ତାଙ୍କୁ ନକଲ କରି ଅନେକ ପକ୍କା ଘରେ ବି ଭଜନ ଓ ସାଧନ କଥା ଶୁଣାନ୍ତି । ଏସବୁ ନେଇ ଚାଲେ ସଂସାର ।

କୃଷ୍ଣର ପୂର୍ବ ଧାରଣା ହୋଇଯାଇଥିଲା ଯେ ବାପାଙ୍କ ହୋଟେଲରେ ଖାଇ ମାଆର ପଣତ ତଳେ ବସି କଥା ଶୁଣାଇବା ହେଉଛି ଜୀବନ ।

ସେଇ ଜୀବନ ଭିତରେ ଝଡ଼ ବତାସ କେମିତି ହଲପଟା କରେ ସେ ବିଚାର ବୁଝି ନ ଥିଲା । ସରକାରୀ ଚାକିରିଆ ମାସକୁ ମାସ ବଢ଼ନ୍ତା ଦରମା ଘରକୁ ବୋହି ନେଇ ସରଦାର ବନିଲା ପରି କୃଷ୍ଣ ମଧ ଅଳ୍ପରେ ସନ୍ତୁଷ୍ଟ ମାତରେ ଅଟଳ ରହି ସରକାରୀ ନୌକରଙ୍କ ପରି କୁହାଳିଆ କପିନା ହୋଇଥିଲା ।

ବହୁତ ଜାଣିଲା ପରେ ସେ ଏବେ ବୁଝିଲାଣି ଯେ ତାକୁ ବାଧ୍ୟତା-ମୂଳକ ଭାବରେ ମରିବାକୁ ପଡ଼ିବ । କାରଣ କିଏ ତାକୁ ଆଉ ପୋଷିବ ଓ ପାଳିବ ?

ସେଇ କାରଣରୁ ଯେତେ ଖରାପ ଲାଗିଲେ ବି ସେ ରାଧା କଥାକୁ ପୂରା ହଟାଇ ଦେଇ ନ ଥାଏ । ବାଁପଦ ଭଲ କଥା ସାହସ କରି କହିବ କିଏ ?

ଏଣେ ନଜର ଶତ୍ତାପରିବେଷ୍ଟ ଗୋଠରେ କଥା ଫୁଟିଲାଣି ଯେ କୃଷ୍ଣ ଧାଉଁଛି ରାଧା ଘରକୁ । ସେ ଜାଣେ ନାହିଁ ରାଧାକୁ । ସେ ଘର ଖରାପ ।

କୃଷ୍ଣକୁ ଘୋର ବିପଦରୁ ରକ୍ଷା କରିବା ପାଇଁ ଅନେକ ବନ୍ଧୁ ଆସି ପହଞ୍ଚିଗଲେଣି । ଦୁର୍ନାମର ଗନ୍ଧରେ ସେମାନେ ରହିପାରୁନାହାନ୍ତି । ରାଧା ସାଙ୍ଗରେ ଏତେ ମିଳାମିଶା ସମାଜକୁ ନିନ୍ଦା ।

—କାହିଁକି ? ମୁଁ ତ ସିନେମା ଥିଏଟର ଦେଖି ଯାଇନାହିଁ ରାଧା ସାଙ୍ଗରେ ।···ତାକୁ କେବେ କିଛି ଉପହାର ଦେଇ ନାହିଁ ।···ତାଙ୍କ ଘରେ କେବେ ବସି ଭୋଜନ ମାରି ନାହିଁ···ତାକୁ ସାଙ୍ଗରେ ନେଇ ବୁଲି ନାହିଁ ସହର ବଜାରରେ ।

—ତଥାପି । ତାଙ୍କ ଘରେ ପୁରୁଷର କାମ କ'ଣ ? ତୁମର ସେଠି କି କାମ ? ରାଧାକୁ ତମେ ଚିହ୍ନିନାହଁ ।

—ସେମାନେ ଖୁବ୍ ଏକୁଟିଆ ।

—ହୁଅନ୍ତୁ । ତୁମେ ତାଙ୍କ ପାଖକୁ ନ ଯିବା ଉଚିତ୍ । ତାହା ହାଗ ତମର ଚରିତ୍ର ଉପରେ କଥା ଉଠୁଛି ।

କୃଷ୍ଣ ଚୁପ୍ ରହିଗଲା ଆଉ ଆଗେଇ ହବ ନାହିଁ । ଲୋକେ ଆଖି ଦେଲେଣି ।

ଘରେ ବି ବିଶେଷ ସୁବିଧା ନାହିଁ । ମାଆ ପଚାରୁଥିଲେ କାହିଁକି ରାଧା ଆଜ ଆସିଲା ନାହିଁ ଏଠିକି ?

— କ'ଣ କାମ ଅଛି ?

—ମୋର ତାହା ପାଖରେ କାମ ଅଛି । ତାକୁ ଟିକିଏ ଡାକି ଦିଅନ୍ତୁ ନାହିଁ ।

—କି କାମ ?

—ଏମିତି । ସେ ଆସି ବାପାଙ୍କର ଶୁଦ୍ଧରେ ଏକା ଏକା ଏଠେ କଲା । ପରେ ତାକୁ କହିବ ନାହିଁ ? ଚେଞ୍ଜଲ ମୋ' ନା କହି ଡାକଦବୁ ।

—ସେ କ'ଣ ଆସିବ ?

—ନ ଆସିଲେ କ ଆସିଲେ ମୁଁ ବୁଝିବି ।

ମାଆର ଡାକରା ଆଉ ନିଜର ଇଚ୍ଛା ସମାନ ସ୍ତରରେ ପହଞ୍ଚିଗଲା । ଯେମିତି ହେଲେ ତ ଆଉଜିବ କାରଣରୁ ରାଧା ସାଙ୍ଗରେ କଥା ହେଇ ହବ । ଯୁବତୀ ସ୍ତ୍ରୀ ଲୋକ ସାଙ୍ଗରେ କଥା କହିବା ମଧ୍ୟ କିଛି ଖ୍ରୋଷ୍ଟ କଥା ନୁହେଁ । ଏଇଟା ତ ସେକ୍ରେଟେରିଏଟ୍ ବା ହୋଟେଲର ବା ଦୋକାନର ଯୁବତୀ କର୍ମଚାରୀ ସାଙ୍ଗରେ କଥା କହିବା ନୁହେଁ ।

ଏହାଠାରୁ ଢେର ଉପରେ—କାମ ନ ଥାଇ ଆଉ ଜଣେ ଯୁବତୀ ଘରେ ନିରାପଦରେ ବସି ଗପିବା ପାଇଁ ଭଡ଼ା ପଇସା ଦେବେ ପଡ଼ିଲେ ବି ଅନେକ ଲୋକ ରାଜି । ଏଠି ସେତକ ମଧ୍ୟ ଦରକାର ନାହିଁ । କେବଳ ବନ୍ଧୁଭାବରେ ବସାଉଠା କରିହବ ।

ସମସ୍ତଙ୍କର ଆପତ୍ତି ଯେ ସେମାନେ କାହିଁକି ନ ଗପିବେ ? ଅଧିକାରରେ ଇଏ କି ପ୍ରକାର ଅନ୍ତର ? ଏଇ ବିଭେଦ ଆଣେ ସ୍ତ୍ରୀ—କେବଳ ଚରିତ୍ରହୀନତା ପାଇଁ ।

କୃଷ୍ଣ ଯାଇ ରାଧାକୁ ମାଆର ଡାକରା କଥା କହିଲା ।

—ହଁ, ସତରେ, ମୁଁ କେଇଦିନ ହେଲାଣି ଯିବି ଯିବି ହୋଇ ଯାଇପାରି ନାହିଁ । ଚାଲ ଯିବା ।

—କ'ଣ ଏବେ ?

—ହଁ । ତୁମେ ସାଙ୍ଗରେ ଅଛ । ପୁଣି ଆଣି ଛାଡ଼ିଦବ ।

—ଦେଖ, ସେ କାମ ହେଇ ପାରିବ ନାହିଁ । ଲୋକେ କ'ଣ କହିବେ ?

—କାହାକୁ ? ତୁମକୁ ନା ମତେ ?

--ବହିକୁ ।

—କହନ୍ତୁ । ଆମର ଘରୋଇ ବଂଧୁତାରେ କହିବାକୁ ସେମାନେ କଏ ? ଦେବେ ନା ନେବେ ? କେତେ ଦେଇଛନ୍ତି ସେମାନେ ?

—ମୁଁ ତୁମ ସାଙ୍ଗରେ ଯାଇପାରିବ ନାହିଁ । ଏବେ ତ କେଜାଣି କେତେ ଲୋକ ମୁରକି ହସା ମାରିବେ । କାଲିକ ହୋଇଯିବ ପ୍ରସ୍ତରର ହଟ୍ଟଗୋଳ ।

—ଆହାରେ ବାବୁ । ତୁମ କଥା ଶୁଣିଲେ ଲାଜ ମାଡ଼ୁଛି । ଆଚ୍ଛା, ତୁମ ଚରିତ୍ର ତେବେ ଏତେ ଭଲ ଯେ ରାଧା ସାଙ୍ଗରେ ଚାଲି ଚାଲି ଗଲେ ପୂରା ଜଖମ ହୋଇଯିବ । ···ହଉ ତେବେ ଯିବା ରିକ୍ସାରେ ।

—ଏଁ ? ରିକ୍ସାରେ ? ଏକାଠି ? · · · ନା, ଅସମ୍ଭବ । ମୁଁ କୌଣସି ସ୍ତ୍ରୀ ଲୋକ ସାଙ୍ଗରେ ଜହ୍ନ ଆଲୁଅ ଅବା ଦିନ ଆଲୁଅରେ ରିକ୍ସାରେ ଯାଇପାରିବ ନାହିଁ ।

—କେବେ କାହାର ସାଙ୍ଗରେ ଯାଇ ନାହିଁ ?

—ନା, ଯାଇଥିଲେ ଆଉ ଚରିତ୍ର ଥାଆନ୍ତା ନା ମୁଁ କୁମାର ହୋଇ ରହିପାରିଥାନ୍ତି । ପାଖକୁ ପାଖ ହୋଇଯିବା ହେଉଛି ଚରିତ୍ର-ହୀନତା ।

—କେବେ କେଉଁଠି କେଉଁ ଝିଅର ହାତ ଧରି ନାହଁ ? କାହାକୁ କେବେ କିସ୍ ଦେଇଥିବ ତ ।

--ଅସମ୍ଭବ । ସେମିତି କଲେ କ'ଣ କେହି ଆଉ ୦ାକପାରେ ଏଇ ସଂସାରରେ ? କେମିତି କେମିତି ସେମାନେ ଛନ୍ଦୁରି ହୋଇପଡ଼ନ୍ତେ । ବେଙ୍ଗ ମୁଁଧା ଛନ୍ଦୁରି ହୋଇ ମାଟିରୁ ପାଣିକୁ ଆଉ ପାଣିରୁ ଆକାଶକୁ ଆଉ ସେଇଠୁ ଛଅଣି ପେଟକୁ ଯିବାକୁ ବାଧ ।

ରାଧା ହସିଲା । ଠିକ୍ କଥା । ଏବେ ଜଣାଗଲା ଯେ କୁମାରମାନେ ଚରିତ୍ରବାନ୍ । କାହାକୁ ଛୁଅଁନ୍ତି ନାହିଁ ।···ଆଚ୍ଛା ସେମାନେ ଘିବନ୍ତି ଅବା ଝୁରନ୍ତି କି ? ସେକରେ ଆଉଟୁପାଉଟୁ ହୁଅନ୍ତି କି ?

—ସତ କଥା ହେଲା ଯେ ଦେହ ଶୁଦ୍ଧି କଲେ କ'ଣ ହେବ। ମନ ଶୁଦ୍ଧି ହୁଏ ନାହିଁ। ସେ ବଟର ବସି ବସି ଭାବେ ଆଉ ସମୁଦ୍ର ଲହଡ଼ ପାଖ ବାଲିରେ ଗାରରେ ଛବି ଆଙ୍କେ। ବଡ଼ ଦୁଃଖର ଅବସ୍ଥା।

—ତାହାହେଲେ କାହାରିକୁ ଜଣେ ବାଛି ବିଭା ହେଲ ନାହିଁ କାହିଁକି ?

—ଆହା, ତୁମେ ବୁଝିନାହଁ। ବିଭାଘରଟା କେବଳ ଦେହର ବିଭାଘର—ସେଥିରୁ କୁଆଁ ମାରେ। କିନ୍ତୁ ମନର ବିଭାଘର ହେଉଛି ଅତି ପବିତ୍ର। ଗୋଳମାଳ ନାହିଁ। ଅଡ଼ୁଆ ତଡ଼ୁଆ ନାହିଁ। ନିଜ ଦୁଃଖରେ ଦୁଃଖ ଶେଷ। ତୁମେ ବୁଝିପାରିବ ନାହିଁ।

—କାହିଁ, ମୁଁ ବି ତ କୁମାରୀ।

—ହିଁ, ତୁମକୁ କେହି ବାଛି ପାଉଣିଲା ନାହଁ ବୋଲି ତୁମେ ହୁଏ ତ କୁମାରୀ। କାହାରିକୁ ଭଲ ପାଉଥିଲେ ତୁମେ କୁମାରୀ ରହନ୍ତ କେମିତି ?

—ଏଡ଼େ ବାଜେ ଲୋକ ତୁମେ। ତୁମକୁ କିଏ କେତେ ଭଲ ପାଉଛି, ସେତକ ମଧ୍ୟ ବୁଝିବା ଅବସ୍ଥାରେ ନାହଁ। ଏଣେ ମନେ ମନେ ଧାରଣା ଯେ ତୁମପରି ବିଚକ୍ଷଣ ବିଜ୍ଞ ଆଉ ଜଗତରେ ନାହିଁ। ଥାଉ··· ଚାଲ ଯିବା।

—ଚାଲ ଚାଲ ଯିବା।

ସବୁଠାରୁ ଅଳ୍ପ ବିପଦଜନକ ବ୍ୟବସ୍ଥା ହେଲା ଚାଲିବା। ଜଣାଶୁଣା ଜାଗାରେ ଚାଲିବା ବି ସେତେ ଭଲ ନୁହେଁ। କିନ୍ତୁ ରିକ୍ସାଠାରୁ ଭଲ। ବାଟରେ ଲୋକ ଜୋରରେ ଚାଲୁଥାଏ। ଆଉ ରାଧା ବଡ଼ ପାଟିରେ ତାଗିଦ୍ କରୁଥାଏ ଯେ ସେ ଏମିତି ଧାଇଁ ପାରିବ ନାହିଁ—ଝୁଣ୍ଟି ପଡ଼ିବ। ଏଣେ ଚନ୍ଦ୍ରା ଲୋକ କାମ ଛାଡ଼ି ଏଣେ ଚାହିଁ ଥାନ୍ତି।

କପାଳରୁ ଝାଳ ବାହାରୁଥାଏ। ଚରିତ୍ର ଉପରେ ଆଘାତ ପଡ଼ିଲେ କପାଳର ଝାଳ ପ୍ରଥମ ସୂଚନା ଦିଏ—ଆତ୍ମ ବିଜୟ ଅବା କୋଧ କଡ଼ାଇଲା ପରି।

ରାଧା ସେମିତି ବଡ଼ ପାଟିରେ କହୁଥାଏ—ଏମିତି ଅଭଦ୍ର ଲୋକ ବଡ଼ ବଡ଼ ସହରରେ ମିଳନ୍ତି ନାହିଁ । ସେମାନେ ଗରିବ ବା ଧନୀ ଯାହା ହୁଅନ୍ତୁ ବ୍ୟବହାର ଖୁବ୍ ଭଲ ।...ଆଚ୍ଛା, ମାଆ କ'ଣ ପାଇଁ ଡ଼ାକଛନ୍ତି ?

—ହେ । ମାଆ କଥା କ'ଣ ରାସ୍ତାରେ କିଏ ପକାଏ ?

—କାହିଁକି ?

—ଲୋକେ କ'ଣ କହିବେ ?

—କହିବେ ଯେ ରାଧାକୁ ଜଣେ ତାହାର ମାଆ ପାଖକୁ ନେଉଛି ।...ରାଧା ଅମଙ୍ଗ ହେଉଛି ଯିବା ପାଇଁ ।

—ତାହାହେଲେ ଚାଲ ଫେରିବା, ତୁମ ଘରକୁ ।

—ନା, ମୋ' ପାଇଁ ଗୋପାଳ ଜର୍ଦ୍ଦା ଅଖଇରିଆ, ପିପରମେଣ୍ଟ ଦିଆ ପାନ ଦୁଇଟା ଆଣିଲ ସେଇ ଦୋକାନରୁ ।

—ମୁଁ ପାରିବ ନାହିଁ ।

ଡ଼ଗ ଡ଼ଗ ହୋଇ ରାଧା ଚାଲିଲା ପାନ ଦୋକାନକୁ । କୃଷ୍ଣ ଠିଆ ହୋଇ ରହିଲା ରାସ୍ତାରେ । ଦୋକାନରୁ ରାଧା ବଡ଼ପାଟିରେ ପଚାରିଲା—ତୁମର ଲକ୍ଷ୍ମୀ ଟାବଲେଟ୍ ଆଉ ସବୁ ପ୍ରକାରର ରଙ୍ଗଣି ମସଲା ଦିଆହେବ ନା ବଡ଼ଆ ପାନ ଖାଇବ ।

—ମୁଁ ପାନ ଖାଏ ନାହିଁ ।

—ଖାଅ । ଏଇ ଦୋକାନର ପାନ ଏଇ ଖଣ୍ଡମଣ୍ଡଳରେ ସରସ । ଦୋକାନୀ ବି କହିଲା—ଖଣ୍ଡେ ଖାଇ ଦେଖନ୍ତୁ ପ୍ରତିଦିନ ଖାଇବାକୁ ମଗାଇବେ ।

ଜଣକିଆ ଓ ଦି ଜଣିଆ ସ୍କୁଟର ଓ ସାଇକଲ ଚାଲିଛି । ମହିଳା-ମାନେ ମୁଣ୍ଡ ବାଳ ଓ ପିନ୍ଧା ସାଢ଼ୀ ଉଡ଼ାଇ ସ୍କୁଟର ଓ ମଟର ସାଇକଲରେ ଯାଇଁ ଯାଇଁ ଚାଲିଲାବେଳେ କୃଷ୍ଣ, ରାଧା ଓ ପାନ ଦୋକାନକୁ ଦେଖି ନେଉଛନ୍ତି ।

ବିଚରା କୃଷ୍ଣ ଠିଆ ହୋଇଥାଏ । ସେ ଭିଡ଼ରେ ଅଟକିଯାଇଛି । କିଛି ସୁବିଧା ହେଉନାହିଁ ।

ପାନ ଖାଇ ଗୁଲିଲେ । ଦୋକାନୀ ଗଣିଦିବ ତାହାର ଏଇ ଏକସ୍ ସେଲେଣ୍ଟ ପାନ ନ ଖାଇଲେ । ଗଧା ବଦଳରେ କୃଷ୍ଣ ପଇସା ଦେଲା ।

ଘର ପାଖ ହେବା ବେଳକୁ କୃଷ୍ଣ ପୂରା ଡ଼ିସିସନ ନେଇଥାଏ ଏଇ ମଉଣ୍ଡି ବଦମାସ ସାଙ୍ଗରେ ସେ କିଛି ସଂପର୍କ ରଖିବ ନାହିଁ । ତାହାର କେବଳ ଚିନ୍ତା କେଉଁ ଉପାୟରେ କୃଷ୍ଣର ଚରିଣକୁ କଳାରେ ମଣ୍ଡି ଦବ । ଏଗୁଡ଼ାକ କ'ଣ କରିବେ ଏଇ ସଂସାରରେ ?

ଅନେକ ବାଳୁଙ୍ଗା ଯା ଆସ କରୁଥାନ୍ତି । ସେମାନେ ଟାଣୁଆ ବାଳୁଙ୍ଗା ହୋଇଥିବାରୁ ବିଚକ୍ଷଣ ନାଗରିକ ହୋଇ ଯାଇଛନ୍ତି । ବାଳୁଙ୍ଗା ସଭାସମିତିରେ ଭାରି ଟାଣ ଟାଣ କଥା କହୁଛି । ଆଉ ବହୁତ ଧାନ ସେଠି ଧାଡ଼ବାନ୍ଧି ଶୁଣୁଛନ୍ତି ଓ ତାଳି ମାରୁଛନ୍ତି ।

ସ୍ତ୍ରୀ ଗୁଡ଼ାକ ଏଇ ଗଧା ସମାଜର ଲୋକ—ଚରିଣକୁ ଖାତିର ନାହିଁ । ଯଦି ଚରିଣ ଆପଣା ସ୍ତ୍ରୀଏଁ ଭିଷ୍ଟି ଗଲା ତାହାହେଲେ ସେ ହେଲା ଜଣେ ବଦନାମୀ । ଆଉ ଯଦି ଚରିଣ ପାଞ୍ଚ ସାତ କଚଡ଼ା ଖାଇଲା ତାହାହେଲେ ମଧ୍ୟ ସେ ଅଭିନନ୍ଦନୀୟ—ଜୀବନର ଆଘାତ ତାକୁ କାବୁ କରି ପାରି ନାହିଁ ।

ଏମାନଙ୍କର ପଟ ମରଦମାନେ ଚରିଣ କହିଲେ ବୁଝନ୍ତି କାଡ଼ୁଆଗିର—ନିଏ ନ ହବା କାମକୁ ଛଳେ, କଳେ, ବଳେ, କୌଶଳେ ଅବା ଦେଇ ଦିଆଇ, ଖୁଆଇ, ପିଆଇ, ନ ହେଲେ ଅଧିଆ ପଡ଼ କରାଇ ନେଇପାରିବ ।

ବିଚରା କୃଷ୍ଣ ସାହିତ୍ୟ, ତର୍କ ଶସ୍ତ୍ର ଓ ଦର୍ଶନର ବ୍ୟାକରଣ ପଢ଼ିଲା । କିନ୍ତୁ ଇଚ୍ଛା, କାର୍ଯ୍ୟ ଓ କାରଣ ଆଉ ଫଳ କଥା ଜାଣିଲା ନାହିଁ । ନ ଜାଣିବା ହେଉଛି ମୂର୍ଖତା—ବୁଦ୍ଧି ଫେଲ ମାରିଲା ।

ନ କରିବା ହେଉଛି ଓଲମି—ମନ ଫେଲ ମାରିଲା ।

ଇଚ୍ଛା ନ କରିବା ହେଉଛୁ ବୁଦ୍ଧିମି—ଦେହ ଫେଲମାରିଲ ।

ପୁଲିସ ଗହଣରେ ସ୍କୁଲର ପ୍ରିନ୍ସିପାଲ୍ ପରି ଲେଡ଼ି ପୁଲିସ ରାଧା ସ୍କୁଲର କୃଷ୍ଣକୁ ବାନ୍ଧ କଢ଼ାଇ କୃଷ୍ଣ ଘରେ ପଶିଲ୍ । ସେତେବେଳକୁ କୃଷ୍ଣର ଟେଟିଚନ ଥୋଡ଼ାଏ ଉଦୟ ହେଲାଣି—ସ୍ତ୍ରୀମାନେ ବହୁତ ବଦଳି ଗଲେଣି । ସେମାନେ ଭୟଙ୍କର ହୋଇ ଗଲେଣି ।

ଘରେ ପହଞ୍ଚି ରାଧା ମାଆର ଗୋଡ଼ତଳେ ଗୋଟାଏ ଲମ୍ବା ମୁଣ୍ଡିଆ ମାରିଦେଲ୍ । କୃଷ୍ଣ ଭାବୁଥିଲ କହିବାକୁ ଯେ ଏଇ ମୁଣ୍ଡିଆମାନଙ୍କୁ ସାମାନ୍ୟ ନ ଭାବିବା ଉଚିତ୍ ।

ମାଆ ଆରମ୍ଭ କଲ୍—ଝିଅ, ମୁଁ ତ ଜାଣିଛୁ ତୁମକୁ ଚାକିରି ପୁରିଯିବ । କୃଷ୍ଣକୁ ଚାକିରି ପୁରିଗଲାଣି—ସେ ଚାକିରି ଚଷମା କିଣିଛୁ ।

—ସତେ ? ମୁଁ ଜାଣି ନାହିଁ ।

—ସେ କ'ଣ କହି ନାହିଁ ?···କୃଷ୍ଣକୁ ଚାହିଁ କହିଲେ ସେ କ'ଣ ପାନ ଖାଇଲାଣି ।

—ହଁ, ବାଟରେ ପାନ କିଣି ଖାଇଲେ ଆଉ ମତେ ଦେଲେ ।

—ଭଲ ହେଲ । ମୁଁ ଖୁସି ।··ତାହା ବାପାଙ୍କର ବର୍ଷିକିଆ ସଇଲାବେଳକୁ ତାକୁ ଯୋଡ଼ା ବର୍ଷ ପଡ଼ିଯିବ ଆଉ ତୁମର ବ ଯୋଡ଼ା ପଡ଼ିଯିବ ।

—ହଁ, ସବୁ ବର୍ଷ ପଡ଼ିବ ।

—ନା, ଝିଅକୁ ତେତିଶି ହେଲବେଳକୁ କୃଷ୍ଣକୁ ହୋଇଥିବ ତେଷ୍ଠିକିଶି ।

ଏସବୁ ଶୁଣି କୃଷ୍ଣ ଚାହିଁଲେ ରାଧା ପାଇଁ ଚା' ବରାଦ କରିବାକୁ । ଏଠି ରହିବା ବିପଦ ।

—ତାଙ୍କୁ ମାଆ ମନା କରିଦିଅନ୍ତୁ । ଆମେ ଏବେ ଚା' ଖାଇ ଆସିଲୁ ।

କୃଷ୍ଣ ଦେଖିଲା ଯେ ରାଧା ଖାଲି ତାହାର ଚରଣ ଉପରେ ଠାରରେ ନଜା ଦେବା ଆରମ୍ଭ କରୁଛି । ସେ ଚାଲିଲା ବାଥ୍ ରୁମ୍ ।

କୃଷ୍ଣର ମା କହିଲେ ପୁଅର ଭୁଲ କଥା । ଦଶ ବର୍ଷ ତଳେ ଦକ୍ଷିଣର ଜଣେ ପ୍ରଫେସର ଏଇଠିକି ଆସି ମୋ' ପାଖରେ ବସିଥିଲା । —ସେ ଓଡ଼ିଆ ଜାଣେ ନାହିଁ । ମୁଁ ହିନ୍ଦୀ ବୁଝେ ନାହିଁ ।···ସେ ଘର ଗଲା । ଲୁଆଡ଼େ ରହିଲା କେଜାଣି ।···ଇଏ ବୋଧହୁଏ ତାକୁ ଡକେଇଛି । ···କେଉଁ ଝିଅ କ'ଣ ଦୁ'ଥର ଆସେ ? କେବେ ଆସିବ ନାହିଁ ।

ଘର ଲୋକ ଗୋଟିଏ ଗୋଟିଏ ଆସି ଉଣ୍ଡି ଭିତରକୁ ଆସିଲେଣି କଥାର ମୋଡ଼କୁ ଠଉରାଇବା ପାଇଁ । କଥା ସବୁ ଓଲଟା ମୋଲଟା ହୋଇ ସହରର କଳ ପାଣି, ମଶା, ଧୂଳି ଆଉ ରିକ୍ସା ଭଡ଼ାରେ ରହିଲା ।

ଗୋଟିଏ ରିକ୍ସାକୁ ଆଣି କୃଷ୍ଣ ଜଣାଇଲା ରାଧାକୁ ।··ରିକ୍ସା ଚାଲିଯିବ । ତୁମ ଘରେ ଅପେକ୍ଷା କରିଥିବେ ।

ରାଧା ଭାବିଲା ଏଇ ବୃନ୍ଦାବନ ରାସ୍ତାରେ ସେ ଆଉ କୃଷ୍ଣ ଖୋଲା ରିକ୍ସାରେ ପବନ ଖାଇ ଫେରିବେ । କୃଷ୍ଣ ସେତେବେଳକୁ ସାଇକଲ ଧରି ଠିଆ ହେଲାଣି ।

ରିକ୍ସା ସାଙ୍ଗରେ ଖଣ୍ଡେ ଦୂର ଯାଇ କୃଷ୍ଣ କହିଲା—ଜରୁରୀ କାମରେ ସେ ଯାଉଛି ଓ ପରେ ଦେଖା ହେବ । ·· କହିଦେଇପାର ।

ଦହେଁ ଭାବିଲେ ସେ ଘଟଣାଟା ଗୋଟାଏ ଝଡ଼ର ରୂପନେଲାଣି । ଖଣ୍ଡି ଆଭୂଡ ବୁଲୁଛି ।

କଥା ବି ଅବାଗିଆ । ବାପା ମରିବାର ବର୍ଷକ ଭିତରେ ବାହାଘର କଥା ପଡ଼େ ନାହିଁ । ଯିଏ ଯାହା କହନ୍ତୁ—ଚକେ ଚଲେ ବାରହାତ । ଗୋଟାଏ ବର୍ଷ ମଝିରେ ଫାଙ୍କ ରହୁଛି । ମନ୍ଦ କ'ଣ ?

ଏକଡିରଣି···ଏକରୁଳଣି

ବଡଣି···ବମ୍ବାଳଣି

ତେଡଣି··ତେମ୍ବାଳଣି

ଏ ସବୁ ବୟସରେ କ'ଣ ବାହାଘର ହୁଏ ? ଯଦି ହୁଏ, ତେବେ ସେଥିରେ କ'ଣ ସୁବିଧା ହୁଏ ବାହାଘରର ଅବା ସଂସାରର ?

ଦୁଇଆଡ଼େ ଲୋକ ଲାଗିଥାନ୍ତି ସମ୍ବନ୍ଧ ବିଗାଡ଼ିବାକୁ । ଦୁଇଜଣଙ୍କ ପାଖରେ ଆଉ ଲୋକ ବିରୁଦ୍ଧରେ ବହୁତ ଦୋଷାରୋପ କରାହେଉଥାଏ । ଏମାନେ ବାହାହେଲେ ସଂସାରର କ'ଣ କ୍ଷତି ହେବ ? ସମାଜ ଉଜୁଡ଼ିଯିବ । ବାହା ନ ହେଲେ ଏଇ ଚାକିରିଆ ସ୍ତ୍ରୀଲୋକମାନେ ଗୋଟାଏ ଶିକ୍ଷା ପାଇବେ ।

ଯାହା କୋଡ଼ିଏ ବାଇଶିରେ ହେଇ ନାହିଁ । ତାକୁ ଆଣି ତିରିଶି ବତିଶି, ଚାଳିଶି ବୟାଳିଶି, ପଚାଶ ବାଉନରେ ଘୋଷି ହୁଅ ନାହିଁ । କାରଣ ପଛୁଆ ଅଞ୍ଚଳର ସମାଜରେ ଈର୍ଷାର ପରିମାଣ ଅଧିକ । ଯଦି ଗୋଟିଏ ସ୍ତ୍ରୀଲୋକ ବିଭା ନ ହୋଇ ରହିଯାଇଛି ତାହାହେଲେ ସେ ଚିତ୍ତବିନୋଦନ ପାଇଁ ଅତି ଉପାଦେୟ । ବାହାଘର ପରେ ସେମାନେ ବିଗିଡ଼ିଯାଆନ୍ତି ।

ତାହାହେଲେ ରାଧା ଓ କୃଷ୍ଣ—କିଏ କାହାକୁ ବାହା ହବ ? କିଏ କାହାକୁ ପୋଷିବ ? କିଏ କାହାକୁ ଗାଳିମନ୍ଦ କରିପାରିବ ? ଦଶ ବର୍ଷ ଆଗରୁ ଏତକ ଘଟିଥିଲେ ରାଧା ଓ କୃଷ୍ଣଙ୍କର ଜୀବନରେ କି ପ୍ରକାରର ସମସ୍ୟା ସୃଷ୍ଟି ହୋଇଥାଆନ୍ତା ?

ପ୍ରକୃତରେ କ'ଣ ସେମାନେ ବିଭା ହେବେ ? ବିଭା ହେବା ଆଗରୁ ତାଙ୍କ ଭିତରେ ଦେହ ଓ ମନର ସମ୍ବନ୍ଧ କେଉଁ ପ୍ରକାରର ଗୁଡ଼ବାଡ଼ ଭିତରେ ରହିଥିବ ? ଏମାନେ କ'ଣ ହନିମୁନ୍ କରିବେ ନା ନାହିଁ ?

—ଲୋକମତ ହେଲା ଯେ ଯେଉଁଠି ପୁଅ ଝିଅ ଏକାଠି ହେଇ ଜଣକ ଘରୁ ଆଉ ଜଣକ ଘରକୁ ଯାଇ ଏକାଠି ହେଇ ରହିବେ ସେଠି ଗୋଟିଏ ବିଧାନ ରହିବ ମଧୁଶଯ୍ୟା ବା ହନିମୁନ୍ ବା ଚଉଠି ରାତି । ନୂଆ ଚଳଣିରେ ଏସବୁ ମଧ୍ୟ ଚାଲିଛି ।

ଏହାକୁ କୁହାଯାଏ ପରିଚୟର ପରିଣତି ।

କିନ୍ତୁ ପରିଚୟ କାହିଁ ?

ରାଧା କହୁଥିଲେ କୃଷ୍ଣଙ୍କୁ—ବିରକ୍ତ ହେବ ନାହିଁ । ଧର୍ମର ବାଟକୁ ଯିବାକୁ ଭୁଲ ନା । ତେଣୁ ଗୀତା ପାଠ କର ।

—କ'ଣ ଅଛି ସେଥିରେ ?

—ସେଥିରେ ଜାଣିବ ନାରୀ କ'ଣ ?

—କ'ଣ ଲେଖା ହୋଇଛି ?

—ନାରୀ ହେଉଛି ସୂକ୍ଷ୍ମ ପ୍ରକୃତି । ସେ ପୁରୁଷୋତ୍ତମ ଯୁକ୍ତ ହେଲେ ସଂସାରର ହିତ କରିପାରନ୍ତି । ...ଆଉ ବିଶ୍ୱରୂପ ଦେଖିବାକୁ ଚାହିଁଲେ ତୁମେ ନାରୀଠାରେ ଦେଖିପାର । ଗୀତାର ବିଭୂତି ଯୋଗ ଓ ବିଶ୍ୱରୂପ ଦର୍ଶନ ପାଇଁ ନାରୀର ସୃଷ୍ଟି ।

—ଆଉ, ମୁଁ ଯାଏଁ ।

—ଦେଖ ସଂସାରରେ ଧୈର୍ଯ୍ୟ ଧରିବା ଦରକାର । ମରିବା ପର୍ଯ୍ୟନ୍ତ ସଂସାର କାହାକୁ ଛାଡ଼େ ନାହିଁ । ସଂସାର ଭିତରୁ ଖସି ପଳାଇବ କେଉଁ ବାଟକୁ ? କେତେ ଲୋକ ବଙ୍କା ଥା'ନ୍ତି ।

—ବଙ୍କା କ'ଣ ?

—ଜାଣ ନାହିଁ ?

ସ୍ୱଭାବେ ତେନ୍ତୁଳି ବଙ୍କା
ଚନ୍ଦ୍ର ବଙ୍କା ଦିନେ ଦିନେ
ଗୁଣ ଦେଲେ ଧନୁ ବଙ୍କା
(ମୁହିଁ-ତୁଇ-ସେଇ) ବଙ୍କା ସବୁଦିନେ ।

—ବାଃ ।

—ବାଃ କ'ଣ ? ଏଇ ସଂସାରରେ ସମସ୍ତେ ବଙ୍କା । ଠାକୁର ବଙ୍କା, ଆଇନ ବଙ୍କା, ଭବିଷ୍ୟତ ବଙ୍କା ଓ ମଣିଷର ସମ୍ବନ୍ଧ ମଧ୍ୟ ବଙ୍କା । ତୁମେ ବଙ୍କା—ମୁଁ ବଙ୍କା । ବୁଝିପାରିଲ ?

କୃଷ୍ଣ ଭାବିଲା ଆଉ ରାଧା ଘରକୁ ସେ ଆସିବ ନାହିଁ । ରାଧା ଠିକ୍ କଲା ଯେ ଯେମିତି ହେଉ କୃଷ୍ଣଙ୍କୁ ଆଣିବାକୁ ହେବ । ସମୁଦ୍ର ଭିତରୁ ପଚାଶ ବର୍ଷ ତଳର ଭଙ୍ଗା ଜାହାଜକୁ କାଢ଼ି ଆଣିବାକୁ ପଡ଼ିବ ପାଣି ଉପରକୁ । ଏଇଟା ଦରକାର ।

ଇଏ କ'ଣ ସମ୍ଭବ ?

* * *